# ସପ୍ତ ସୁରଭି
## (ଜୀବନ : ପ୍ରତିଭା)

ସଂକଳନ :
ଉତ୍କଳ ପାଠକ ସଂସଦ
ସୁଜାତା ଭବନ, କଳିଙ୍ଗ ଲେନ୍
ମହତାବ ରୋଡ଼, କଟକ-୧୨

ସମ୍ପାଦନା :
ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି
ଶ୍ରୀମତୀ ବୀଣାପାଣି ମହାନ୍ତି
ଶ୍ରୀ ରାହାସ ରାୟ
ଶ୍ରୀ ଶୁଭ ନାରାୟଣ ସ୍ୱାଇଁ
ଶ୍ରୀ ଯମେଶ୍ୱର ତ୍ରିପାଠୀ
ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର
ଶ୍ରୀ ପ୍ରସନ୍ନ କୁମାର ଦାଶ
ଡଃ ଶ୍ରୀଚରଣ ଦାସ
ଶ୍ରୀ ବସନ୍ତ କୁମାର ସାହୁ

ପ୍ରକାଶ କାଳ : ତା ୮ । ୨ । ୨୦୦୪

ପ୍ରଚ୍ଛଦ ଶିଳ୍ପୀ :
ଶ୍ରୀ ସୁନାମଣି ସାମଲ

ପ୍ରାପ୍ତିସ୍ଥାନ :
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ଛାପା ସଂଖ୍ୟା : ୫୦୦

ଅକ୍ଷରସଜ୍ଜା : ସନ୍ତୋଷ ଡି.ଟି.ପି. ସେଣ୍ଟର

ମୁଦ୍ରଣ : ରେଖା ପ୍ରେସ୍
ବାଙ୍କିସାହି, କଟକ-୭୫୩ ୦୦୯

SAPTA SURAVI
(A Biographical Book)

Compiled by
UTKAL PATHAK SAMSAD
Sujata Bhawan
Kalinga Lane
Mahatab Road
Cuttack-12

Available at
ORISSA BOOK STORE
Binod Behari
Cuttack-753 002

Price : Rs. 30.00

# ସୂଚୀପତ୍ର



❑ ❑

# 'ଉତ୍କଳ ପାଠକ ସଂସଦ'ର ପରିବାର

ସଭାପତି : ଶ୍ରୀ ପଠାଣି ପଟ୍ଟନାୟକ
ଉପ-ସଭାପତି : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି
ସମ୍ପାଦକ : ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି

## ପରାମର୍ଶଦାତା

ଶ୍ରୀ ସହଦେବ ସାହୁ, ପୂର୍ବତନ ମୁଖ୍ୟ ଶାସନ ସଚିବ
ଶ୍ରୀ ଅନାଦି ସାହୁ, ସାଂସଦ
ଡଃ ବନବିହାରୀ ପଣ୍ଡା, ପୂର୍ବତନ ଆରକ୍ଷୀ ମହାନିର୍ଦ୍ଦେଶକ
ଶ୍ରୀ ନଦିଆ ବିହାରୀ ମହାନ୍ତି, ଆକାଶବାଣୀ (ବଡ଼ଭାଇ)
ଶ୍ରୀ ଗୋବିନ୍ଦ ଚରଣ ପାତ୍ର, ବରିଷ୍ଠ ପ୍ରକାଶକ
ଡଃ ସତ୍ୟ ରାୟ, ବରିଷ୍ଠ ସାମ୍ବାଦିକ
ଇଂ. ଦ୍ୱୈପାୟନ ପଟ୍ଟନାୟକ, କାର୍ଯ୍ୟନିର୍ବାହୀ ଯନ୍ତ୍ରୀ

## ପରିଚାଳନା

ଡଃ ଶ୍ୟାମ ସୁନ୍ଦର ମିଶ୍ର
ଶ୍ରୀ ରାହାସ ରାୟ
ଶ୍ରୀ ଗୌର ପଟ୍ଟନାୟକ
ଶ୍ରୀମତୀ ସୁଜାତା ମହାନ୍ତି
ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ
ଶ୍ରୀମତୀ ଅପର୍ଣ୍ଣା ମିଶ୍ର
ଶ୍ରୀ ଯମେଶ୍ୱର ତ୍ରିପାଠୀ
ଶ୍ରୀ ଅରୁଣ କୁମାର ପଣ୍ଡା
ଶ୍ରୀ ସତ୍ୟନାରାୟଣ ଅଗ୍ରୱାଲା
ଶ୍ରୀ ବରଦା ପ୍ରସନ୍ନ ପଟ୍ଟନାୟକ
ଶ୍ରୀ ଶୁଭ ନାରାୟଣ ସ୍ୱାଇଁ
ଶ୍ରୀମତୀ ବୀଣାପାଣି ମହାନ୍ତି
ଡଃ ବୀଣାପାଣି ସିଂହ
ଶ୍ରୀ ବସନ୍ତ ମହାନ୍ତି
ଡଃ ଶାନ୍ତନୁ କୁମାର ରଥ
ଶ୍ରୀ ପ୍ରସନ୍ନ କୁମାର ଦାଶ
ଡଃ ନିରଞ୍ଜନ ସାହୁ
ଡଃ ଶ୍ରୀଚରଣ ଦାସ
ଶ୍ରୀ ସୂର୍ଯ୍ୟମଣି ଖୁଣ୍ଟିଆ
ଡଃ ଶୈଳେଶ୍ୱର ନନ୍ଦ
ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର
ଶ୍ରୀ ଗଙ୍ଗାଧର ମହାରଣା
ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ
ଶ୍ରୀ ରାଧାଶ୍ୟାମ ମହାନ୍ତି
ଶ୍ରୀ ପରମାନନ୍ଦ ଅଧିକାରୀ
ଡଃ ପ୍ରଭାତ କୁମାର ମିଶ୍ର
ଶ୍ରୀମତୀ କାକଲୀ ପାଲ୍
ଶ୍ରୀ ବସନ୍ତ କୁମାର ସାହୁ
ଶ୍ରୀ ସଞ୍ଜିତ୍ ପଟ୍ଟନାୟକ

# 'ଉତ୍କଳ ପାଠକ ସଂସଦ' ପରିବାର

ବ୍ରଜନାଥ ରଥ
ଡଃ ପ୍ରସନ୍ନ କୁମାର ମିଶ୍ର
ବିଶ୍ୱେଶ୍ୱର ପଣ୍ଡା
ଡଃ କୃଷ୍ଣ ଚରଣ ବେହେରା
ଅନ୍ନଦା କିଙ୍କର ମହାନ୍ତି
ପୃଥ୍ୱୀରାଜ ପଟ୍ଟନାୟକ
ଜଗଦ୍‌ମୋହନ ପଟ୍ଟନାୟକ
ଡଃ ହରିହର କାନୁନ୍‌ଗୋ
ଡଃ ବୈଷ୍ଣବ ଚରଣ ସାମଲ
କୃଷ୍ଣଚନ୍ଦ୍ର ମହାପାତ୍ର
ଦୀନକୃଷ୍ଣ ମହାନ୍ତି
ଡଃ ତୀର୍ଥାନନ୍ଦ ମିଶ୍ର
ଡଃ ସନ୍ଧ୍ୟାରାଣୀ ସିଂହ
ନିର୍ମଳ ଚନ୍ଦ୍ର ପହୀ
ଦେବଦତ୍ତ ସାମନ୍ତସିଂହାର
କୁମାରକବି ଅରକ୍ଷିତ ପ୍ରଧାନ
କାହ୍ନୁନାରାୟଣ ମହାନ୍ତି
ଡଃ ଗୁରୁପ୍ରସାଦ ମହାନ୍ତି
ରାମକୃଷ୍ଣ ପତି (ଚାରଣ)
ନବୀନ ପଟ୍ଟନାୟକ

କଞ୍ଚନା ରାଜଗୁରୁ
ଧ୍ରୁବ ଚରଣ ସାହୁ
ପ୍ରଫୁଲ୍ଲ ପଟ୍ଟନାୟକ
ଭିକାରୀ ମିଶ୍ର
ଗୋକୁଳାନନ୍ଦ ଦାସ
ଚାରଣ ରାମଦାସ
ବିଜୟ ଶଙ୍କର ପାତ୍ର
ସତ୍ୟପ୍ରିୟ ମହାପାତ୍ର
ମାନସ ପ୍ରଧାନ
ବ୍ରହ୍ମାନନ୍ଦ ବିଶ୍ୱାଳ
ଡଃ ଉମେଶ ପତ୍ରୀ
ଚନ୍ଦ୍ରମଣି ପଣ୍ଡା
ମୃତ୍ୟୁଞ୍ଜୟ ସାମଲ
ବନବିହାରୀ ମହାନ୍ତି
ଡାକ୍ତର ପ୍ରତାପ କିଶୋର ମିଶ୍ର
ଅପୂର୍ବରଞ୍ଜନ ରାୟ
ମଧୁମିତ୍ରା ଦାଶ
ଡଃ ସତ୍ୟାନନ୍ଦ ସ୍ୱାଇଁ

| | |
|---|---|
| ମାନସ ଦାସ | ରଘୁନାଥ ମହାପାତ୍ର |
| କନକମଞ୍ଜରୀ ମହାନ୍ତି | ମହେଶ୍ୱର ରଥ |
| ଚଣ୍ଡୀଚରଣ ରାଉତରାୟ | ସରୋଜିନୀ ମିଶ୍ର |
| ବିଚିତ୍ରାନନ୍ଦ କାନୁନ୍‌ଗୋ | ସୁନାମଣି ସାମଲ |
| ଅମିତା ବେହେରା | ସ୍ୱର୍ଣ୍ଣଲତା ସିଂହସାମନ୍ତ |
| ଦୁର୍ଗାଚରଣ ଷଡ଼ଙ୍ଗୀ | ବିବେକାନନ୍ଦ ପଟ୍ଟନାୟକ |
| ଦୀନକୃଷ୍ଣ ମିଶ୍ର | ତପନ ମିତ୍ର |
| ହରିହର ବାହିନୀପତି | ବ୍ରହ୍ମାନନ୍ଦ ମହାନ୍ତି |
| ଅର୍ଜ୍ଜୁନ ଦାଶ | ଲକ୍ଷ୍ମୀ ମିଶ୍ର |
| ଧ୍ରୁବଚରଣ ପଣ୍ଡା | ଚିତ୍ତରଞ୍ଜନ କର |

❑ ❑

# ଆମର ଆଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଆନ୍ତର୍ଜାତୀୟ ପୁସ୍ତକ ବର୍ଷ ଅବସରରେ ଜନ୍ମଲାଭ କରିଥିଲା 'ଉତ୍କଳ ପାଠକ ସଂସଦ' । ଏହି ବର୍ଷଠାରୁ ପୁସ୍ତକ ପ୍ରସାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମେଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଙ୍କଳନ ପ୍ରକାଶ କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନା ଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବା ପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରିଛି ।

'ଉତ୍କଳ ପାଠକ ସଂସଦ' ବିଚାର କରେ ଯେ—ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ଶିକ୍ଷା, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ସମ୍ମାନିତ, ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

କିନ୍ତୁ ମନେ ରଖିବାକୁ ହେବ ଯେ—ପ୍ରତିଭା ପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାର ଅନେକ

କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇପାରିଥିଲେ ସୁଦ୍ଧା ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହୀତ ହୋଇପାରି ନାହିଁ । 'ଉତ୍କଳ ପାଠକ ସଂସଦ' ପୂଜ୍ୟପୂଜାର ପରମ୍ପରା ରକ୍ଷା କରି ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାର କିଞ୍ଚିତ୍ ପ୍ରୟାସ କରିଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୭୦ ମସିହାଠାରୁ ପ୍ରତ୍ୟେକ ବର୍ଷ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଉଛି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀ ଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ମିନତି ମିଶ୍ର, ସାମୁଏଲ ସାହୁ (ବାବି), ପ୍ରିୟନାଥ ମିଶ୍ର (ପୀର) ଓ ଅନ୍ୟ କେତେଜଣ ବିଭିନ୍ନ କ୍ଷେତ୍ରରେ ସ୍ମରଣୀୟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି । ପ୍ରଥମ ପାଞ୍ଚ ବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇପାରିଲା ନାହିଁ । ସେଥିପାଇଁ ପରେ ପ୍ରତ୍ୟେକ ବର୍ଷ ପର୍ଯ୍ୟାୟକ୍ରମେ ସେମାନଙ୍କ ଜୀବନ ଚରିତ ଓ କାର୍ଯ୍ୟକଳାପର ବିବରଣୀ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ପକ୍ଷରୁ ଏପର୍ଯ୍ୟନ୍ତ ଅନେକ ଗୁଡ଼ିଏ ଜୀବନୀ ସଂକଳନ ପ୍ରକାଶ ପାଇଲାଣି ।

୧୯୭୬—'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ-ସାଧକ କାଳିନ୍ଦୀଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱରସାଧକ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭—'ସପ୍ତ ରଶ୍ମି' ପୁସ୍ତକରେ ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନ

ବହାରୀ ଚୌଧୁରୀ, ଅନୁବାଦକ ଲାଲା ନଗେନ୍ଦ୍ର କୁମାର ଦାସ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାଶ, ଗବେଷକ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳ ଚନ୍ଦ୍ର କରଙ୍କ ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮—**'ସପ୍ତ ଶିଖା'** ପୁସ୍ତକରେ ଅଭିନେତା ଯତୀନ୍ ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶୀହର୍ଷ ମିଶ୍ର, କଥା ସାହିତ୍ୟ ସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ରୁଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯—**'ସପ୍ତ ପ୍ରଦୀପ'** ପୁସ୍ତକରେ ଛଉ ନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତ ସାଧକ ଜଗବନ୍ଧୁ ସାହୁ, ବିଚ୍ଛିନ୍ନାଞ୍ଚଳ କବି ଜଗନ୍ନାଥ ବର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୂପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦—'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ରାମ ପ୍ରସାଦ ସିଂ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲା ଗାୟକ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧—**'ସପ୍ତ ଜ୍ୟୋତି'** ସଙ୍କଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡଃ ନବୀନ କୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୮୨—**'ସପ୍ତ ପୁଷ୍ପ'** ସଙ୍କଳନରେ ରସିକରାଜ କବି ଫତୁରାନନ୍ଦ, ପାଲା ଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭ ଚନ୍ଦ୍ର ସିଂ, ଶିଳ୍ପୀଶିରୋମଣି ଶ୍ରୀଧର ମହାପାତ୍ର, ବାଣୀ ବରପୁତ୍ର ରାମକୃଷ୍ଣ ନନ୍ଦ,

ଚଳନ୍ତ ଚରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସମାଜସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ସ୍ଥାନିତ ହୋଇଛି ।

୧୯୮୩—'ସପ୍ତ ରାଗ' ସଙ୍କଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି. ଭି. କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟଗୁରୁ ଅନନ୍ତ ଚରଣ ରାୟଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪—'ସପ୍ତ ସୁମନ' ସଙ୍କଳନରେ ସାହିତ୍ୟ ସାଧକ ଡଃ ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବୀ ଡାକ୍ତର ଶରଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତଗୁରୁ କ୍ଷିତୀଶ ମୈତ୍ର, ଗବେଷକ ଡକ୍ଟର ନଟବର ସାମନ୍ତରାୟ, ଛଉ ନୃତ୍ୟଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫—'ସପ୍ତ ସ୍ତବକ' ପୁସ୍ତକରେ ସଙ୍ଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥି, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତ ସାଧକ ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଚାରୀ, ହାସ୍ୟସ୍ରଷ୍ଟା କବି ବସନ୍ତ କୁମାର ଶତପଥିଙ୍କ ଜୀବନୀ ପ୍ରଦତ୍ତ ।

୧୯୮୬—'ସପ୍ତ ତରଙ୍ଗ' ପୁସ୍ତକରେ ସ୍ଥାନଲାଭ କରିଥିଲା ଐତିହାସିକ ଡକ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତଶିଳ୍ପୀ ମାର୍କଣ୍ଡେୟ ମହାପାତ୍ର, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ନୃତ୍ୟଗୁରୁ ପଙ୍କଜ ଚରଣ ଦାସ, କବି ଅନନ୍ତ ପଟ୍ଟନାୟକ ଓ ସଙ୍ଗଠକ ସଂଗ୍ରାହକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

୧୯୮୭—'ସପ୍ତ ପ୍ରଭା' ସଙ୍କଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡଃ ବଂଶୀଧର ମହାନ୍ତି, ବୈଜ୍ଞାନିକ ଡକ୍ଟର

ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡଃ ପ୍ରିୟମ୍ବଦା ମହାନ୍ତି (ହେଜମାଦୀ), ସଙ୍ଗୀତଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅସିତ୍ ମୁଖାର୍ଜୀ ଏବଂ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୮—'ସପ୍ତ ଧାରା' ପୁସ୍ତକରେ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ମଣିମାଳା ଦେବୀ, ଗବେଷକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବୀ ଶ୍ରୀମତୀ ରମା ଦେବୀ ଓ ସୁଲଳିତ ଶାସ୍ତ୍ରୀୟ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୯—'ସପ୍ତ ଶାଖା' ପୁସ୍ତକରେ ସାହିତ୍ୟିକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ସଙ୍ଗୀତଶିଳ୍ପୀ ନୃସିଂହନାଥ ଖୁଣ୍ଟିଆ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ବାଦ୍ୟଶିଳ୍ପୀ ଶ୍ରୀ କୁଞ୍ଜବିହାରୀ ମେହେର, ସମାଜସେବୀ ଶ୍ରୀ ମନମୋହନ ଚୌଧୁରୀ, ସ୍ଥପତି ଶ୍ରୀ ବିପ୍ରଚରଣ ମହାନ୍ତି ଓ ଅଭିନେତା ଶ୍ରୀ ପ୍ରିୟନାଥ ମିଶ୍ର (ପୀର)ଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୯୦—'ସପ୍ତ ତାରକା' ପୁସ୍ତକରେ ଗବେଷକ, କବି ଓ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟ, ଅଭିନେତା କଳାକାର ଦୁଃଖୀରାମ ସ୍ୱାଇଁ, ନୃତ୍ୟ ସାଧକ ନୃତ୍ୟଗୁରୁ ରଘୁନାଥ ଦତ୍ତ, ସଙ୍ଗୀତ ସାଧକ ସୁକୁମାର ସାହୁ, ବିପ୍ଳବୀ କବି ମନମୋହନ ମିଶ୍ର, ସାହିତ୍ୟିକ କବିଭୂଷଣ ରାଜକିଶୋର ପଟ୍ଟନାୟକ ଓ ପ୍ରକାଶକ ପୀତାମ୍ବର ମିଶ୍ରଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୯୧—'ସପ୍ତ ସୌରଭ' ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଥିଲା, ସେମାନେ ହେଲେ ସାମ୍ବାଦିକ ଯୁଗଳ କିଶୋର ପାଣିଗ୍ରାହୀ, ଗାଳ୍ପିକ ରାଜକିଶୋର ରାୟ, ଅଭିନେତା ବ୍ୟୋମକେଶ ତ୍ରିପାଠୀ, ଗବେଷକ କେଶବଚନ୍ଦ୍ର ମେହେର, କଳାକାର କୋହ୍ଲ ଚରଣ ସାହୁ, ସମାଜସେବିକା ପାର୍ବତୀ ଗିରି ଏବଂ ପ୍ରକାଶକ ରାଧାଶ୍ୟାମ ମହାନ୍ତି ।

୧୯୯୨—'ସପ୍ତ ସାଧକ' ପୁସ୍ତକ ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଙ୍କଳିତ ହୋଇଛି, ସେମାନେ ହେଲେ—କବି ଡଃ ବିନୋଦ ଚନ୍ଦ୍ର ନାୟକ, ନାଟ୍ୟକାର ପ୍ରାଣବନ୍ଧୁ କର, ସଂସ୍କୃତ ଭାଷାବିତ୍ ଜନସେବୀ କବିରାଜ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା, ଅଭିନେତା ଦୀନବନ୍ଧୁ ଦାସ (ଟିମା), ସଙ୍ଗୀତପ୍ରବୀଣ ନିତାଇ ଚରଣ ସିହ୍ନା, ସାମ୍ବାଦିକ ରାମଚନ୍ଦ୍ର ଦାଶ ଏବଂ ପ୍ରକାଶକ ସହଦେବ ପ୍ରଧାନ ।

୧୯୯୩—'ସପ୍ତ ଗୌରବ' ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ—ସବୁଜ ଯୁଗର ସାହିତ୍ୟିକ ହରିଶ୍ଚନ୍ଦ୍ର ବଡ଼ାଲ, ଗବେଷକ ଡଃ ବେଣୀମାଧବ ପାଢ଼ୀ, ଯନ୍ତ୍ରସଙ୍ଗୀତ ଶିଳ୍ପୀ ଭକ୍ତବତ୍ସଳ ପାତ୍ର, ଚିତ୍ରଶିଳ୍ପୀ ଅଜିତ କେଶରୀ ରାୟ, ପଲ୍ଲୀକବି ଗୋଲକଚନ୍ଦ୍ର ପ୍ରଧାନ, ଅଭିନେତା ନିରଞ୍ଜନ ଶତପଥି ଓ ନୃତ୍ୟଗୁରୁ ମାୟାଧର ରାଉତ ।

୧୯୯୪—ପୁସ୍ତକ 'ସପ୍ତର୍ଷି'ରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନ ସ୍ଥାନ ପାଇଛି, ସେମାନେ ହେଲେ—ସାହିତ୍ୟିକ ଲକ୍ଷ୍ମୀଧର ନାୟକ, ଗବେଷକ ଡଃ ଗଙ୍ଗାଧର ବଳ, ଉପାନ୍ତ ଅଞ୍ଚଳର ସାହିତ୍ୟ ସାଧକ ପ୍ରୟାଗଦତ୍ତ ଯୋଷୀ, ଚିତ୍ରଶିଳ୍ପୀ ଏବଂ ଜନସେବୀ ତଥା ସଂଗ୍ରାମୀ ନବକିଶୋର ପଟ୍ଟନାୟକ, ସାମ୍ବାଦିକ ରଘୁନାଥ ପାଠୀଶାସ୍ତ୍ରୀ, ଅଭିନେତା ଶରତଚନ୍ଦ୍ର ପୂଜାରୀ ଏବଂ ପ୍ରକାଶକ ଅଭିରାମ ମହାପାତ୍ର ।

୧୯୯୫—'ଅଷ୍ଟରତ୍ନ' ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କ ଜୀବନୀ ସ୍ଥାନୀତ ହୋଇଛି, ସେମାନେ ହେଲେ—ଗବେଷକ ପଠାଣି ପଟ୍ଟନାୟକ, କବି ଓ ଗାଳ୍ପିକ ଦୁର୍ଗାମାଧବ ମିଶ୍ର, ଜନସେବୀ ଓ ସଙ୍ଗଠକ ବସନ୍ତ କୁମାର ପାଣିଗ୍ରାହୀ, ସୁସାହିତ୍ୟିକ ଓ ସଙ୍ଗୀତଶିଳ୍ପୀ ଶ୍ରୀମତୀ ବୀଣା ଦେବୀ, ଅଭିନେତା ନଟବର ସେଣ, ଚିତ୍ରଶିଳ୍ପୀ ଉଦୟ ନାରାୟଣ ଜେନା, ଝୁମର ଓ ଛଉନୃତ୍ୟ ବିଶାରଦ ଗିରିଶ ଚନ୍ଦ୍ର ମହାନ୍ତ, ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନପ୍ରାପ୍ତ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ ।

୧୯୯୬—'ସପ୍ତ ସିନ୍ଧୁ' ପୁସ୍ତକରେ ଗାଳ୍ପିକ ଓ ଔପନ୍ୟାସିକ କିଶୋରୀ ଚରଣ ଦାସ, ନୃତ୍ୟଶିଳ୍ପୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ, ସଙ୍ଗୀତ ଶିଳ୍ପୀ ଶ୍ରୀମତୀ ବୀଣାପାଣି ମହାନ୍ତି, ଅଭିନେତା ଗୋବିନ୍ଦ ତେଜ, ଚିତ୍ରଶିଳ୍ପୀ ସୁନାମଣି ସାମଲ, ପାଲା ଗାୟକ ଜଗନ୍ନାଥ ବେହେରା ଓ ଡକ୍ଟର ସଦାଶିବ ସ୍ମୃତି ସମ୍ମାନ ଲାଭ କରିଥିବା ବେଣୁଧର ରାଉତଙ୍କ ଜୀବନୀ ପ୍ରକାଶିତ ।

୧୯୯୭—'ଆମ ସ୍ମରଣୀୟ ପ୍ରତିଭା'ରେ ସମ୍ମାନିତ ପ୍ରତିଭାଧର ବ୍ୟକ୍ତିମାନେ ହେଲେ—ସାହିତ୍ୟିକ ସାତକଡ଼ି ହୋତା, ଗବେଷକ ଡଃ ଅସିତ କବି, ସଙ୍ଗଠକ ଗିରିଜା ଭୂଷଣ ପଟ୍ଟନାୟକ, ପଲ୍ଲୀକବି ମଦନ ମୋହନ ମିଶ୍ର, ସଙ୍ଗୀତ ଶିଳ୍ପୀ ପଣ୍ଡିମେଶ୍ୱର ଜେନା, ଅଭିନେତା ହେମନ୍ତ କୁମାର ଦାସ, ପ୍ରକୃତିବନ୍ଧୁ ସୁଭାଷ ଚନ୍ଦ୍ର ସିଂ ଓ ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନପ୍ରାପ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ର ।

୧୯୯୮—'ଉତ୍କଳଶ୍ରୀ' ଜୀବନୀ ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କ ଜୀବନୀ ପ୍ରକାଶ ପାଇଛି ସେମାନେ ହେଲେ—ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ, ସମାଲୋଚକ ଓ ଗବେଷକ ଡକ୍ଟର କୃଷ୍ଣ ଚରଣ ବେହେରା, ସାହିତ୍ୟିକ ଓ ସାମ୍ବାଦିକ ରଜନୀକାନ୍ତ ଦାସ, ସଙ୍ଗୀତ ଶିଳ୍ପୀ ଭିକାରୀ ଚରଣ ବଳ, ନୃତ୍ୟଶିଳ୍ପୀ ମାଗୁଣି ଚରଣ ଦାସ, ହରିକଥା ପରିବେଷକ ଗନ୍ଧସାଗର ଲଡୁକିଶୋର ପାଣି ଓ ସଦାଶିବ ମିଶ୍ର ସ୍ମୃତି ସମ୍ମାନ ଲାଭ କରିଥିବା ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ ।

୧୯୯୯—ମସିହାରେ ପ୍ରକାଶିତ 'ଓଡ଼ିଶାର ବରପୁତ୍ର' ପୁସ୍ତକରେ ବରପୁତ୍ର ଅର୍ଥଶାସ୍ତ୍ରବିତ୍ ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ସୁ-ସାହିତ୍ୟିକ ଓ ଗାଳ୍ପିକ ଶ୍ରୀ ଅଚ୍ୟୁତାନନ୍ଦ ପତି, ପ୍ରବୀଣ ସମାଲୋଚକ ଓ ଗବେଷକ ଡଃ ବିଚିତ୍ରାନନ୍ଦ ମହାନ୍ତି, ସୁ-ସାମ୍ବାଦିକ ଓ ସାହିତ୍ୟିକ ପ୍ରଫେସର ଚିନ୍ତାମଣି ମହାପାତ୍ର, ଅଭିନୟ ନିପୁଣା ଶ୍ରୀମତୀ ଗ୍ଲୋରିଆ ମହାନ୍ତି, ପ୍ରବୀଣ ପ୍ରକାଶକ ଓ ଅନୁବାଦକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ, ସଦାଶିବ ସ୍ମୃତି ସମ୍ମାନପ୍ରାପ୍ତ ପଲ୍ଲୀକବି ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ଇତ୍ୟାଦିଙ୍କ ଜୀବନୀ ସ୍ଥାନିତ ହୋଇଛି ।

୨୦୦୦—'ସପ୍ତ-ସାଗର'ରେ ଐତିହାସିକ ଗବେଷକ ଡଃ କରୁଣା ସାଗର ବେହେରା, ଅର୍ଥନୀତିଜ୍ଞ ଡକ୍ଟର ବୈଦ୍ୟନାଥ ମିଶ୍ର, ଔପନ୍ୟାସିକ ତଥା ସୁସାହିତ୍ୟିକ ବଳରାମ ପଟ୍ଟନାୟକ, ନୃତ୍ୟଗୁରୁ ଗଙ୍ଗାଧର ପ୍ରଧାନ, ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ଶାନ୍ତନୁ ମହାପାତ୍ର, ସୁପ୍ରସିଦ୍ଧ ସମାଲୋଚକ ଡଃ କାହ୍ନୁଚରଣ ମିଶ୍ର ଏବଂ ଅଭିନେତା ଓ ଶିଳ୍ପୀ କୃଷ୍ଣଚନ୍ଦ୍ର ରଥଙ୍କ ଜୀବନୀ ପ୍ରକାଶିତ ହୋଇଛି ।

୨୦୦୧—'ସାରସ୍ୱତ ସାଧକ' ପୁସ୍ତକରେ ପ୍ରକାଶିତ ପ୍ରତିଭାଧର ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରବୀଣ ଶିକ୍ଷାବିତ୍, ସୁ-ସାହିତ୍ୟିକ, ସମାଲୋଚକ ଶ୍ରୀ ଗୌରୀକୁମାର ବ୍ରହ୍ମା, ପ୍ରସିଦ୍ଧ ସମାଲୋଚକ, ଭାଷାବିଜ୍ଞାନୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ସୁ-ସାହିତ୍ୟିକ, ବରେଣ୍ୟ ଜନସେବୀ ଶ୍ରୀ ହରିହର ବାହିନୀପତି, ସଂସ୍କୃତିପ୍ରେମୀ ଇଞ୍ଜିନିୟର ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ, ପ୍ରସିଦ୍ଧ ନାଟ୍ୟକାର, ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ରୀ ସାରଦା ପ୍ରସନ୍ନ ନାୟକ, ପ୍ରଖ୍ୟାତ ସଙ୍ଗୀତଶିଳ୍ପୀ ଶ୍ରୀ ରଘୁନାଥ ପାଣିଗ୍ରାହୀ, ଶିଶୁ ସାହିତ୍ୟିକ ଶ୍ରୀ ବାସୁଦେବ ମହାପାତ୍ର ଏବଂ ପ୍ରଖ୍ୟାତ ସାଂସ୍କୃତିକ ସଙ୍ଗଠକ ଶ୍ରୀ ସତ୍ୟନାରାୟଣ ଅଗ୍ରୱାଲଙ୍କ ଜୀବନୀ ପ୍ରକାଶିତ ।

୨୦୦୨—ମସିହାରେ ପ୍ରକାଶିତ 'ସପ୍ତ ପ୍ରତିଭା' ପୁସ୍ତକରେ ସାହିତ୍ୟିକ ଚିନ୍ତାମଣି ବେହେରା, ଗବେଷକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର, ଜନସେବୀ ଅନ୍ନପୂର୍ଣ୍ଣା ମହାରଣା, ଶିଶୁ ସାହିତ୍ୟିକ ରାମ ପ୍ରସାଦ ମହାନ୍ତି, ସଙ୍ଗୀତଜ୍ଞ ଦାମୋଦର ହୋତା, ସଙ୍ଗଠକ ଖଟାଉ ସୁନ୍ଦର ଦାସ ଏବଂ ସାମ୍ବାଦିକ ଗୋପାଳ ମିଶ୍ରଙ୍କ ଜୀବନୀ ପ୍ରକାଶିତ ।

୨୦୦୩ ମସିହାରେ ''ସାରସ୍ୱତ ସପ୍ତକ'' ପୁସ୍ତକରେ—ଔପନ୍ୟାସିକ ବିଭୂତି ପଟ୍ଟନାୟକ, ପ୍ରବୀଣ ଶିକ୍ଷାବିତ୍ ଶତ୍ରୁଘ୍ନ ନାଥ, ଗବେଷକ ଧନେଶ୍ୱର ମହାପାତ୍ର, ଓଡ଼ିଆ ଚଳଚ୍ଚିତ୍ର ଜଗତର ଲୋକପ୍ରିୟ ହାସ୍ୟ ଅଭିନେତା ଜୟୀରାମ ସାମଲ, ଓଡ଼ିଶୀ ସଙ୍ଗୀତ ବିଶାରଦ ଶ୍ୟାମାମଣି ଦେବୀ, ସମାଜସେବୀ ତଥା 'ସମାଜ'ର ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ଏବଂ ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ନଦୀୟା ବିହାରୀ ମହାନ୍ତିଙ୍କ ଜୀବନୀ ମୁଦ୍ରିତ ।

ଆମେ ଆଶା କରୁ, ଆମର ଏ ଉଦ୍ୟମ ଓଡ଼ିଶାର ପାଠକ-ପାଠିକାମାନଙ୍କ ନିକଟରେ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ପରିଚିତ କରାଇବାରେ ସହାୟକ ହେବ । ଅବଶ୍ୟ ଆମର ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି ଅନେକ କିଛି କରିବାକୁ ବାକି ଅଛି । ତା' ସତ୍ତ୍ୱେ ବିଶ୍ୱାସ କରାଯାଏ ଯେ—ପ୍ରାଥମିକ ପଦକ୍ଷେପ ସ୍ୱରୂପ ଏହି ଜୀବନୀ ସଙ୍କଳନଗୁଡ଼ିକ ଭବିଷ୍ୟତ ପାଇଁ ଆଲୋକ ବର୍ତ୍ତିକା ସଦୃଶ କାର୍ଯ୍ୟ କରିବ ।

ଏ ସବୁ ଉଦ୍ୟମ ସତ୍ତ୍ୱେ ପାଠକ ସଂସଦର ସଦସ୍ୟମାନଙ୍କ ମନରେ ଅନେକ ଦୁଃଖ ରହିଯାଉଛି । କାରଣ ଅନେକ ସାଧକଙ୍କୁ ପାଠକ ସଂସଦ ସମ୍ମାନିତ କରିପାରୁ ନାହିଁ । ଏହାଛଡ଼ା ପାଠକ ସଂସଦ ଗ୍ରାମାଞ୍ଚଳରେ ସାହିତ୍ୟ ସଂସ୍କୃତିର ପ୍ରସାର ପାଇଁ ଯେଉଁ ସାହିତ୍ୟ ଆସର, କବିତା ପାଠୋତ୍ସବ ଏବଂ ପୁସ୍ତକ ପ୍ରଦର୍ଶନୀ କରି ଆସୁଥିଲା, ଗତ ଦୁଇ ବର୍ଷ ଧରି ସେଭଳି ଆୟୋଜନ କରି ପାରୁନାହୁଁ । ତେବେ ପାଠକ ସଂସଦ ଆଗାମୀ ଦିନରେ ତା'ର ଆଭିମୁଖ୍ୟକୁ ବଜାୟ ରଖି ଗ୍ରାମାଞ୍ଚଳ ଅଧିବେଶନ ଆୟୋଜନ କରିବାକୁ ଯୋଜନା କରୁଛି ।

ଶେଷରେ ଅଗଣିତ ପାଠକ-ପାଠିକା, ଲେଖକ, ଦର୍ଶକ, ଶ୍ରୋତା, ଘୋଷକ, ଶ୍ରମିକ ଏବଂ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିଙ୍କ ସ୍ନେହ, ସଦ୍‌ଭାବ, ସଦିଚ୍ଛା କାମନା କରି ରହୁଛୁ ।

॥ ଇତି ॥

**ସୁବ୍ରତ ପ୍ରିୟବ୍ରତ ମହାନ୍ତି**
ସମ୍ପାଦକ, ଉତ୍କଳ ପାଠକ ସଂସଦ



ଡଃ. ରାଧାନାଥ ରଥ



ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ



ଶ୍ରୀମତୀ କୁମ୍ କୁମ୍ ମହାନ୍ତି



ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସ



ଶ୍ରୀଯୁକ୍ତ ବିଜୟ ମହାନ୍ତି



ଶ୍ରୀଯୁକ୍ତ ଦଣ୍ଡପାଣି ମିଶ୍ର



ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ସିଂହଦେଓ

# ନିରଳସ ସାଧକ ଓ ନିରୋଳା ଗଦ୍ୟଶିଳ୍ପୀ : ଚିତ୍ତରଂଜନ

*● ଡକଟ୍‌ର ଶ୍ରୀଚରଣ ଦାସ*

ଚିତ୍ତରଂଜନ ଦାସ ଓଡିଶାର ଜଣେ ଖ୍ୟାତନାମା ସାହିତ୍ୟିକ । କାବ୍ୟ, କବିତା, ଗଳ୍ପ, ନାଟକ, ଉପନ୍ୟାସ ଆଦି କଳ୍ପନାଧର୍ମୀ ସାହିତ୍ୟର ବହୁବିଧ ଦିଗପ୍ରତି ଧ୍ୟାନ ନଦେଇ ପ୍ରବନ୍ଧ ଓ ସମାଲୋଚନାରେ ସେ ଅପ୍ରତିଦ୍ୱନ୍ଦୀ । ବିଭିନ୍ନ ଅନୁବାଦ ଓ ଭ୍ରମଣ କାହାଣୀର ରଚୟିତା ଭାବରେ ତାଙ୍କର ଲୋକପ୍ରିୟତାକୁ କଳନା କରାଯାଇ ନପାରେ । ନିଖୁଣ ଗଦ୍ୟଶିଳ୍ପୀ ଚିତ୍ତରଂଜନ ଗଦ୍ୟକୁ ଯଥାସମ୍ଭବ ରସସିକ୍ତ ଜୀବନଧର୍ମୀ ଓ ବାସ୍ତବାଭିମୁଖୀ କରିବା ଲକ୍ଷ୍ୟନେଇ ସତତ ଯତ୍ନଶୀଳ । ଲେଖନୀ ତାଙ୍କର ସର୍ବଦା ଚଳଚଞ୍ଚଳ । ନିରଳସ ସାଧକ ଓ କର୍ମଯୋଗୀ ଚିତ୍ତରଂଜନ କେଉଁଠି ଥକିପଡିବା ଅଥବା ଅଟକି ଯିବା କେବେ ଶୁଣାଯାଇ ନାହିଁ । ଜେଲର ପ୍ରକୋଷ୍ଠରୁ ତାଙ୍କ ସାହିତ୍ୟ ସୃଷ୍ଟିର ଅୟମାରମ୍ଭ ଘଟିଛି ମାତ୍ର କୋଡିଏ ବର୍ଷ ବୟସରେ ୧୯୪୨ ମସିହାରୁ ଦୀର୍ଘ ଷାଠିଏ ବର୍ଷରୁ ଅଧିକ କାଳ ଧରି ସେ ନିରବଚ୍ଛିନ୍ନ ସାଧନାରତ । ତାଙ୍କର ସାହିତ୍ୟ ଫସଲ ମଧ୍ୟରେ ସେ କାହାରିକୁ ବାଦ୍ ଦେଇ ନାହାନ୍ତି । ସମାଜ, ଧର୍ମ, ରାଜନୀତି, କଳା, ବିଜ୍ଞାନ, ଇତିହାସ,ସଂସ୍କୃତି, ଦର୍ଶନ, ମନସ୍ତତ୍ତ୍ୱ, ନୃତତ୍ତ୍ୱ ଆଦି ବହୁବିଧ ପ୍ରସଙ୍ଗ ପ୍ରବନ୍ଧ ମାଧ୍ୟମରେ ଉପସ୍ଥାପିତ ହୋଇଛି । ଫସଲ କିଆରୀ ଭିତରେ ନପଶି ବାହାରୁ ଉପରଠାଉରି ହୋଇ ତାଙ୍କୁ ଆଲୋଚନା କରିବା ଏବଂ ତାଙ୍କ ବ୍ୟକ୍ତିତ୍ୱକୁ କଳନା କରିବା ଅପ୍ରାସଙ୍ଗିକ ତ ନିଶ୍ଚୟ । ଅସୁନ୍ଦର ଓ ଅମୂଳକ ମଧ୍ୟ । ଏଇଥିପାଇଁ ଆମ ଦେଶରେ ପ୍ରକୃତ ସାହିତ୍ୟିକମାନଙ୍କୁ ସମ୍ମାନ ମିଳେ ନାହିଁ, ଯଦି ମିଳେ ତାହା ବହୁ ବିଳମ୍ବରେ ଅତିକ୍ରାନ୍ତ ସମୟରେ । ସେମାନଙ୍କୁ ପଢ଼ିବା ଓ ଜାଣିବା ପାଇଁ ମୁଷ୍ଟିମେୟ ସଂଖ୍ୟକ ଲୋକ ଆଗେଇଆସି ଥାନ୍ତି । ସାହିତ୍ୟକୁ ଜୀବନରେ କାମରେ ଲଗାଇବା ପାଇଁ ସେ ସର୍ବଦା ପରାମର୍ଶ ଦେଇଆସିଛନ୍ତି । ସେହି ରକମର ସାହିତ୍ୟ ସୃଷ୍ଟି ହେବା ପାଇଁ ତାଙ୍କର ଲେଖକ ସମାଜକୁ ଆହ୍ୱାନ । ତାଙ୍କ ମତରେ ''ଆମେ ଯେମିତି ସାହିତ୍ୟ ତିଆରି କରିବା ସେପରି ସାହିତ୍ୟ ଅନୁରୂପ ଭାବରେ କାମରେ ଲାଗିବ । ସାହିତ୍ୟକୁ

ଯେପରି ଗଢ଼ଣ ଢ଼ଙ୍ଗରେ ଗଢ଼ିବ। ସେପରି ଢ଼ଙ୍ଗରେ ଆମକୁ ସଙ୍ଗଳଭିବାକୁ ହେବ ସେଥିରେ ଦ୍ୱିମତ ହେବାର ଅବକାଶ ନାହିଁ। ଏଣୁ ଗଢ଼ଣ ନୀତିଟି ସମସ୍ତଙ୍କର ବୋଧଗମ୍ୟ ହେବା ଧ୍ୟେୟ, ଯାହାକି ସମସ୍ତ ପରିବେଶକୁ ମାର୍ଜିତ, ଉନ୍ନତ, ସଂଯତ ଓ ପ୍ରାକୃତ ରୂପରେଖ ମଧ୍ୟରେ ମାନବିକ ମୂଲ୍ୟବୋଧକୁ ପ୍ରୋତ୍ସାହନ ଦେଇ ଆତ୍ମିକ ଚେତନାରେ ସର୍ବଦା ଜାଗ୍ରତ ସତ୍ତାରେ ଉଦ୍‌ଫୁଲିତ ହେଉଥିବହିଁ ହେଉଥିବ।'' କିନ୍ତୁ ହୃଦୟ ନଥିବା ରାଜ୍ୟରେ ହୃଦୟ ବଞ୍ଚାଯିବାର ଯେଉଁ ଜୁଲମ ହେଉଛି ତାହା ସାଂପ୍ରତିକ ସାହିତ୍ୟ ଓ ସମାଜକୁ ଗୋଟିଏ ଗୋଟିଏ ଶକ୍ତ ଆଘାତ। ଚିତ୍ତରଂଜନ ଦାସ ଅଜସ୍ର ସ୍ରାବୀ ଓ ଅନର୍ଗଳବକ୍ତା ଜଣେ। ତାଙ୍କ ଜୀବନ ଅସରନ୍ତି ପ୍ରେରଣାର ଉତ୍ସ। ତାଙ୍କ ପାଇଁ ଜୀବନ ପାଲଟି ଯାଇଛି ବିଦ୍ୟାଳୟ। ଲେଖିବା, ପଢ଼ିବା, କହିବା ଏହି ତିନୋଟି ଅଧ୍ୟାୟକୁ ପ୍ରାଧାନ୍ୟ ଦେଇ ତାଙ୍କ ଜୀବନ ଗତିଶୀଳ। ଅଶୀବର୍ଷ ବୟସରେ ପହଞ୍ଚିସାରିଥିଲେ ମଧ୍ୟ ସେ ପୂର୍ବପରି ନିରଳସ, କର୍ମତତ୍ପର ଅଧ୍ୟୟନରତ। ତାଙ୍କର ସାମଗ୍ରିକ ସାହିତ୍ୟର ପରିଧି ମଧ୍ୟରେ ପ୍ରବେଶ କରିପାରି ନଥିଲେ ହେଁ ଜୀବନର ଅନେକ କଥା ତଦୀୟ ଆତ୍ମଜୀବନ 'ମିତ୍ରସ୍ୟ ଚକ୍ଷୁଷା' ପୁସ୍ତକରୁ ଉପଲବ୍ଧ ହୋଇଥାଏ।

**ଜୀବନ କଥା**

ଓଡିଶାରେ ବାଗଲପୁର ନାମରେ ଅନେକ ଗ୍ରାମ ଅଛି। କିନ୍ତୁ ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ବାଇଶମୌଜାର ବାଗଲପୁର ଗାଆଁ ଇତିହାସ ପ୍ରସିଦ୍ଧ। ଭାରତର ଜାତୀୟ ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମରେ ଏହି ଗ୍ରାମର ପନ୍ଦର ଷୋଳଜଣ ଯୁବକ ଝାସ ଦେଇ କାରାବରଣ କରିଥିଲେ। ଦେବୀ ଓ ବିଲୁଆଖାଇ ନଦୀ ତଟ୍ପାର୍ଶ୍ୱରେ ପ୍ରବାହିତ ବାଇଶମୌଜା ଏକ ଦ୍ୱୀପାଞ୍ଚଳ। ଏହି ବାଇଶମୌଜାର ବାଗଲପୁର ଗ୍ରାମରେ ୧୯୨୩ ମସିହା ଅକ୍ଟୋବର ମାସ ୩ ତାରିଖରେ ଚିତ୍ତରଞ୍ଜନ ଦାସ ଜନ୍ମ ଗ୍ରହଣ କରିଥିଲେ। ସେଦିନ ଗାଆଁ ଗୋଟାକ ଯାକର ଲୋକଯାତ୍ରାର ଆନନ୍ଦ ଭିତରେ ବୁଡିରହିଥିବା ବେଳେ ରାତିର ତୃତୀୟ ଭାଗରେ ସେ ଜନ୍ମ ହୋଇଥିଲେ। ବଡ ବାପା ସେଥିପାଇଁ ତାଙ୍କ ନାମ ରଖିଲେ ଚିତ୍ତରଂଜନ। ଚିତ୍ତରଂଜନଙ୍କ ପିତାଙ୍କ ନାମ ଖୁସାଲି ଚରଣ ଦାସ ଓ ମାଆ ଥିଲେ ହାରାମଣି ଦେବୀ। ଖୁସାଲି ଚରଣଙ୍କ ପାଞ୍ଚପୁଅ ଓ ତିନି ଝିଅ ମଧ୍ୟରେ ଚିତ୍ତରଂଜନ ବାଲ୍ୟାବସ୍ଥାରୁ ସ୍ୱାଧୀନ ଚେତାଥିଲେ । ତାଙ୍କ ବଡଭାଇଙ୍କ ନାମଥିଲା ଶ୍ରୀ ଚରଣ ଦାସ୍ କିନ୍ତୁ ବଡବାପାଙ୍କର ଏକ ମାତ୍ର ପୁତ୍ର କାହ୍ନୁ ଚରଣ ଦାସ ସମସ୍ତଙ୍କ ଠାରୁ ବର୍ଷୀୟାନ୍ ଥିବାରୁ ସବୁ ପୁଅ ଝିଅମାନେ ତାଙ୍କୁ ବଡଭାଇର ସମ୍ମାନ

ଦେଉଥିଲେ । ଭୟ ଏବଂ ଭକ୍ତି ମଧ୍ୟ ଅନ୍ତରରେ ପୁରିରହିଥିଲା । ଭାଇ ଭାଉଜଙ୍କ ସ୍ନେହ, ସାଇପଡିଶାଙ୍କ ଆଦର ଏବଂ ସର୍ବୋପରି ବାଗଲପୁରର ସୌହାର୍ଦ୍ଦପୂର୍ଣ୍ଣ ଶାନ୍ତ ଓ ସୌନ୍ଦର୍ଯ୍ୟମୟୀ ପ୍ରକୃତି ତାଙ୍କର ଶୈଶବକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ଚିତ୍ତରଂଜନ ନିଜଗ୍ରାମ ପ୍ରାଇମେରୀ ସ୍କୁଲରୁ ପାଠପଢ଼ା ଶେଷକରି ପୁନଙ୍ଗ ସ୍କୁଲରେ ଉଚ୍ଚପ୍ରାଥମିକ ଶିକ୍ଷାଲାଭ କଲେ । ସେତେବେଳେ ତାଙ୍କ ପରିବାରର ବଡଭାଇ କାହ୍ନୁଚରଣ କଟକରେ ଚାକିରୀ କରୁଥାନ୍ତି । ଘରର ଅନେକ ଦାୟିତ୍ୱ ତାଙ୍କ ଉପରେ ଥାଏ । ପୁନଙ୍ଗରେ ଉଚ୍ଚପ୍ରାଥମିକ ଶିକ୍ଷା ସରନ୍ତେ ସେ ଚିତ୍ତରଂଜନଙ୍କୁ ଗାଁ ସ୍କୁଲକୁ ନେଇଗଲେ ଏବଂ ବାଗଲପୁର ମାଇନର ସ୍କୁଲରେ ଷଷ୍ଠ ଶ୍ରେଣୀରେ ତାଙ୍କ ନାମ ଲେଖାଗଲା । ଭାଇଙ୍କ ଆଦେଶ ଚିତ୍ତରଂଜନ ଘରେ ରହିପାରିବେନି । ସେ ସ୍କୁଲ ହଷ୍ଟେଲରେ ରହିପାଠପଢ଼ିବ । ତାହାହିଁ ହେଲା । ଗ୍ରାମ ସ୍କୁଲରୁ ଷଷ୍ଠ ଶ୍ରେଣୀ ପାଶ୍ କରିବାପରେ ଚିତ୍ତରଂଜନଙ୍କର କଟକର ରାଣୀହାଟ ସ୍କୁଲକୁ ସ୍ଥାନାନ୍ତର ହେଲା । ଏଠାରେ ପ୍ରଥମେ ସ୍କୁଲର ସୁଯୋଗ୍ୟ ଶିକ୍ଷକ ବାଞ୍ଛାନିଧି ଶତପଥୀଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଗଢ଼ିଉଠିଲା । ପ୍ରାଥମିକ ବୟସରୁ ଜୀବନ, ଜଗତ ଓ ଶିକ୍ଷା ସଂପର୍କିତ ଯଥେଷ୍ଟ ଧାରଣା ସେ ବାଞ୍ଛାନିଧିଙ୍କ ଠାରୁ ଲାଭ କରିଥିଲେ ଯାହା ତାଙ୍କର ଭବିଷ୍ୟତ ଜୀବନର ଉନ୍ନତିପାଇଁ ଥିଲା ପ୍ରଚ୍ଛନ୍ନ ଆଶୀର୍ବାଦ ।। ଚିତ୍ତରଂଜନଙ୍କ ଶୈଶବକୁ ସରସ ସୁନ୍ଦର କରିବା ପାଇଁ ଗୌରୀଭାଇ ବା ଗୌରାଙ୍ଗ ଚରଣ ଦାସଙ୍କର ଭୂମିକା ଉଲ୍ଲେଖ ଯୋଗ୍ୟ ଥିଲା । ସେ ତାଙ୍କର ଚିଁଶି ଆଙ୍ଗୁଠି ଧରି ନୂଆ ନୂଆ ବାଟରେ ଆଗେଇ ଯିବାପାଇଁ ପ୍ରେରଣା ଦେଇଥିଲେ। ତାଙ୍କର ସଂସ୍କାରବାଦୀ ଚିନ୍ତାଧାରାଦ୍ୱାରା ଚିତ୍ତରଂଜନ ଖୁବ୍ କମ୍ ବୟସରୁ ପ୍ରଭାବିତ ହୋଇଥିଲେ । ଫଳରେ ତାଙ୍କ ମନଭିତରୁ ଜାତିଭେଦର ସଂକୀର୍ଣ୍ଣ ଭାବନା ଏବଂ ଧର୍ମ ବର୍ଣ୍ଣର ପାଚେରୀ ମୂଳଭାଙ୍ଗି ପଡିଥିଲା ।

ରାଣୀହାଟସ୍କୁଲରୁ ମଧ୍ୟଇଂରାଜୀ ଅଧ୍ୟୟନପରେ ସେ ରେଭେନ୍‌ସା କଲିଜିଏଟ ସ୍କୁଲରେ ମାଟ୍ରିକ ପଢ଼ିଲେ । ଏହି ସମୟରୁ ତାଙ୍କ ସାହିତ୍ୟିକ ଜୀବନର ଆଦ୍ୟ ସ୍ଫୁରଣ ଘଟିଥିଲା । ସ୍କୁଲର ଇଂରାଜୀ ଶିକ୍ଷକ ଅଧିରାଜ ମୋହନ ସେନାପତି କ୍ଲାସରେ ପାଠ ପଢାଇ ସାରିବାପରେ ସେହି ବିଷୟଗୁଡିକୁ ଛାତ୍ର ମାନଙ୍କ ଦ୍ୱାରା ଅଭିନୀତ କରାଉଥିଲେ । ସକ୍ରେଟିସ୍ ସଂପର୍କିତ ଏକ ଲୋଖାର ନାଟ୍ୟାଭିନୟ ତାଙ୍କୁ ଏତେ ପରିମାଣରେ ମୁଗ୍ଧ କରିଥିଲା ଯେ, ସେ ପରେ ଘରକୁ ଯାଇ ଓଡିଆରେ 'ମହାତ୍ମା ସକ୍ରେଟିସ୍' ବୋଲି ଲେଖାଟିଏ ଲେଖି ସ୍କୁଲ ପତ୍ରିକା 'ଛାତ୍ରବନ୍ଧୁ'ରେ ପ୍ରକାଶ କରିଥିଲେ । ଛାପା ଅକ୍ଷରରେ ପ୍ରକାଶ ପାଇଥିବା ଏହି ଲେଖାଟି ଚିତ୍ତରଂଜନ ଦାସଙ୍କ ର

ସର୍ବପ୍ରଥମ ରଚନା । ଚିତ୍ତରଂଜନଙ୍କର ଅସମ୍ଭବ ସ୍ମୃତିଶକ୍ତିଥିଲା । ବାଲ୍ୟାବସ୍ଥାରୁ ସେ ଥିଲେ ମେଧାବୀ । ସତେଯେପରି ସରସ୍ୱତୀଙ୍କର ବରପୁତ୍ର ଓ ଗଣେଶଙ୍କ ମାନସ ସନ୍ତାନ । ଶିକ୍ଷାଲାଭର ପ୍ରତିଟି ପାହାଚରେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ପାଉଥିଲେ । ତେଣୁ ପରିବାରଠାରୁ କୌଣସି ଆର୍ଥିକ ସହାୟତା ନ ନେଇ ନିଜଗୋଡରେ ଠିଆହେବାର ଅଭ୍ୟାସ ଧାରା ତାଙ୍କର ବଳବତ୍ତର ଥିଲା ।

ଚିତ୍ତରଂଜନ ଛାତ୍ରାବସ୍ଥାରୁ ଥିଲେ ସଂଗ୍ରାମୀ । ସେ ସଂଗ୍ରାମ ନିଜ ପାଇଁ ନୁହେଁ ଦେଶ ପାଇଁ, ଜାତିଉଦ୍ଦେଶ୍ୟରେ । ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ପାଠପଢୁଥିବାବେଳେ କଟକ ମେଡିକାଲ ସ୍କୁଲର ଛାତ୍ର ଆନ୍ଦୋଳନ ହେଲା । ଚିତ୍ତରଂଜନ ଥୟ ହୋଇ ରହିପାରିଲେ ନାହିଁ । ସେ ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଗିରଫ ହେଲେ । ମାଟ୍ରିକ ପାଶ୍ କରିବାପରେ ସେ ରେଭେନ୍‌ସା କଲେଜରେ ପଢ଼ିଲେ । ପରାଧୀନ ଗ୍ରସ୍ତ ଭାରତ ବର୍ଷର ଅବସ୍ଥା ହୃଦୟକୁ ମଚ୍ଛି ପକାଉଥାଏ । ୧୯୪୨ ମସିହାରେ ମହାତ୍ମାଗାନ୍ଧୀ ଭାରତ ଛାଡ ଆନ୍ଦୋଳନର ଡାକରା ଦେଲେ । ଚିତ୍ତରଂଜନ କି ଆଉ ଚୁପ୍ ହୋଇ ବସିପାରନ୍ତି । ସେ କଲେଜ ଛାଡି ଚାଲିଲେ ନିଜଗାଁ ବାଗଲପୁରକୁ । ଗାଁ ସ୍କୁଲ ଘରେଥିବା ଲିଥୋ ମେସିନ୍‌ରେ ଲୁଚି ଲୁଚି ପ୍ରଚାର ପତ୍ର ଛାପି ଆନ୍ଦୋଳନ ବାର୍ତ୍ତା ପ୍ରଚାରର ଦାୟିତ୍ୱ ନେଇଥିଲେ । ଛ'ମାସ କାଳ ସେ ଏହି କାର୍ଯ୍ୟ କଲାପରେ ଭାରତ ଛାଡ ଆନ୍ଦୋଳନରେ ପତ୍ୟକ୍ଷ ଭାବେ ସକ୍ରିୟ ଅଂଶ ଗ୍ରହଣ କରି ଗିରଫ ହେଲେ । ୧୯୪୨ ମସିହାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଦୁଇବର୍ଷକାଳ ସେ କଟକ ଓ ବାଙ୍ଗାଲୋର ଜେଲରେ ରହିଥିଲେ । ଏହି ସମୟ ତାଙ୍କ ଜୀବନରେ ଅପୂର୍ବ ସୁଯୋଗ ଆଣି ଦେଲା । ଜେଲ ପ୍ରକୋଷ୍ଠର ନିରୋଳା କୋଠରୀ ମଧ୍ୟରେ ସେ ଅନେକ ପୁସ୍ତକ ପଢ଼ିଚାଲିଲେ ଏବଂ ଲେଖାଲେଖିରେ ଆଗ୍ରହ ବଢ଼ିଲା । ଗୀତ ଲେଖିବା ଏବଂ ରବୀନ୍ଦ୍ର ସଙ୍ଗୀତ ଗାନ କରିବାରେ ସେ ଅସୀମ ତୃପ୍ତିଲାଭ କରୁଥିଲେ । ଜେଲଭିତରେ ରହି ଚିତ୍ତରଂଜନ ରଚନା କରିଥିବା କବିତା ଗୁଡିକ ୧୯୪୮ ମସିହାରେ କବିତା ସଂକଳନ 'ଦୁଇ ଅଧ୍ୟାୟ'ରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ଯଥାର୍ଥରେ ଥିଲା ଶ୍ରୀ ଯୁକ୍ତ ଦାସଙ୍କର ସର୍ବପ୍ରଥମ ପ୍ରକାଶିତ ଗ୍ରନ୍ଥ । ଅଧ୍ୟୟନ ପ୍ରତି ତାଙ୍କର ଯଥେଷ୍ଟ ନିଷ୍ଠା ଓ ଅନୁରକ୍ତି ଥିଲା । କିନ୍ତୁ ପୁସ୍ତକ ମଧ୍ୟସ୍ଥ ସୀମିତ ଜ୍ଞାନ ମଧ୍ୟରେସେ ନିଜକୁ ସୀମାବଦ୍ଧ କରି ରଖିବାକୁ ଉଚିତ ମନେ କରି ନାହାନ୍ତି । ଜ୍ଞାନର ସାରସ୍ୱତ ଭଣ୍ଡାରକୁ ବିସ୍ତୃତ କରିବା ଥିଲା ତାଙ୍କ ଜୀବନର ଅସଲ ଉଦ୍ଦେଶ୍ୟ । ଜେଲରୁ ମୁକ୍ତି ପାଇବା ପରେ ଚିତ୍ତରଂଜନ ଆଉ ରେଭେନ୍‌ସା

କଲେଜକୁ ଫେରିନାହାନ୍ତି । ଯାଇଛନ୍ତି ଜ୍ଞାନଗୁରୁ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ ଦ୍ୱାରା ପ୍ରତିଷ୍ଠିତ ଜୀବନ୍ତ ଶିକ୍ଷାନୁଷ୍ଠାନ ଶାନ୍ତି ନିକେତନକୁ । ସେଠାରେ ଅନୁସନ୍ଧିତ୍ସୁ ପ୍ରବୃତ୍ତିର ସହସ୍ରଗୁଣରେ ଅଭିବୃଦ୍ଧି ଘଟିଛି ଚିତ୍ତରଂଜନଙ୍କର । ଶାନ୍ତି ନିକେତନ ବାସ୍ତବରେ ତାଙ୍କ ପାଇଁ ହୋଇଛି ଶାନ୍ତିର ନୀଡଟିଏ । ଜ୍ଞାନର ସାଗରକୁ ତାଙ୍କର ଆଖି ପାଇନାହିଁ । ପ୍ରକୃତ ଶିକ୍ଷାଲାଭର ସ୍ଥାନ ନିର୍ବାଚିତ କରିଥିବାରୁ ସେ ନିଜକୁ ଧନ୍ୟ ମଣିଛନ୍ତି । ବିଶ୍ୱଭାରତୀର ଛାତ୍ର ହୋଇ ସେ ବିଶ୍ୱକୁ ଦେଖିଛନ୍ତି ନୂଆ ଢ଼ଙ୍ଗରେ, ନୂଆ ରୂପରେ । ଜ୍ଞାନର ପାହାଚ ପରେ ପାହାଚ ଅତିକ୍ରମ କରିଛନ୍ତି । ଭାବିଛନ୍ତି ଜ୍ଞାନ ସମୁଦ୍ରର ଏ କୂଳରୁ ସେ ସେକୂଳ ପର୍ଯ୍ୟନ୍ତ ଏକାଥରକେ ପହଁରି ଯିବେ । କିନ୍ତୁ ସେ ଯେ ଅସୀମ । ଯେତେ ପଢ଼ିଛନ୍ତି ଜ୍ଞାନ ପିପାସା ପ୍ରବୃତ୍ତି ସମୟକୁ ସମୟ ବଳବତୀ ହୋଇଛି । ବହୁ ସୁଯୋଗ୍ୟ ଶିକ୍ଷକଙ୍କର ସାନ୍ନିଧ୍ୟ ଲାଭ କରିଛନ୍ତି ସେ । ଆଶୀର୍ବାଦ ମଧ୍ୟ ତାଙ୍କୁ ମିଳିଛି । ଦୁନିଆରେ ଜ୍ଞାନ ଚକ୍ଷୁର ଉନ୍ମୋଚନ ହେଲେ କିଛି ଅଭାବ ରୁହେ ନାହିଁ । ସହସ୍ର ଆଖିରେ ସେ ସମଗ୍ର ବିଶ୍ୱକୁ ଦେଖିବାର ସୁଯୋଗ ଲାଭ କରିଛନ୍ତି ଏଇ ଶାନ୍ତି ନିକେତନରେ । ଋଷି ପ୍ରତିମ ଶିକ୍ଷକମାନଙ୍କ ଆଚରଣରେ ନଇଁ ଯାଇଛି ତାଙ୍କ ହୃଦୟ । ଜ୍ଞାନୀ ଗୁଣୀ ଲୋକମାନେ କିପରି ନମ୍ର ହୁଅନ୍ତି ତାହା ବିଶ୍ୱଭାରତୀରୁ ସେ ଜାଣିଲେ । ୧୯୪୫ ମସିହାର ଶେଷ ଭାଗରୁ ୧୯୫୦ ମସିହା ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚ ବର୍ଷ ଶାନ୍ତି ନିକେତନର ରହଣି କାଳ ମଧ୍ୟରେ ସେ ପ୍ରାୟ ସବୁଶାସ୍ତ୍ରରେ କିଛି ନା କିଛି ଜ୍ଞାନ ଅର୍ଜନ କରିଥିଲେ । ବିଶିଷ୍ଟ ଶିକ୍ଷକ ସୁଖମୟ ଭଟ୍ଟାଚାର୍ଯ୍ୟ ଥିଲେ ତାଙ୍କର ଦର୍ଶନ ଅଧ୍ୟାପକ । ତାଙ୍କ ପାଖରେ ସେ ଦର୍ଶନ ସହିତ ବଙ୍ଗଳା ଭାଷା, ସଂସ୍କୃତ ଏବଂ ଉପନିଷଦ୍ ସବୁ ପଢ଼ିଛନ୍ତି । ଭାରତୀୟ ଦର୍ଶନରେ ଗଭୀର ପାଣ୍ଡିତ୍ୟ ଲାଭ ଚିତ୍ତରଂଜନଙ୍କୁ ଭିବଷ୍ୟତ ଜୀବନରେ ଅନେକ ସାହାଯ୍ୟ କରିଛି । ବିଶ୍ୱଭାରତୀର ଅନ୍ୟ ଏକ ଆକର୍ଷଣ ଏହାର ପାଠାଗାର । ତିନି ଲକ୍ଷ୍ୟରୁ ଉର୍ଦ୍ଧ୍ୱ ପୁସ୍ତକ ଥିବା ଏହି ପାଠାଗାର ଦେଖି ତାଙ୍କର ଆଖି ଝଲସି ଉଠିଛି । ତନ୍ମଧ୍ୟରେ ଆତ୍ମହରା ହୋଇପଡିଛନ୍ତି ସେ । ବିଶ୍ୱର ଅନେକ ଭାଷାର ପୁସ୍ତକ ସହିତ ଏଇଠି ତାଙ୍କର ପରିଚୟ ହୋଇଛି । ଏହି ପାଠାଗାରରେ ସେ ଆନନ୍ଦ କୁମାର ସ୍ୱାମୀଙ୍କ ବହୁ ପୁସ୍ତକ ଅଧ୍ୟୟନ କରିଛନ୍ତି । ତାଙ୍କର ଲେଖା, ଜ୍ଞାନ ଓ ଗବେଷଣା ଚିତ୍ତରଂଜନଙ୍କୁ ଅତି ବାସ୍ତବ ମନେ ହୋଇଛି । ଜ୍ଞାନ ଓ ଗବେଷଣା କ୍ଷେତ୍ରରେ ତଥା ମସ୍ତିଷ୍କକୁ ସମୃଦ୍ଧ କରିବାରେ ଆନନ୍ଦକୁମାର ସ୍ୱାମୀଙ୍କ ପୁସ୍ତକ ଗୁଡିକ ମାର୍ଗ ଦର୍ଶକ ଭଳି କାର୍ଯ୍ୟ କରିଥିଲା ତାଙ୍କ ଜୀବନରେ । ଶାନ୍ତି ନିକେତନରେ ମଧ୍ୟ ସେ ଷୋଡଶ ଶତାବ୍ଦୀର ଇଉରୋପ ଦେଶର ବିଶିଷ୍ଟ

ଦାର୍ଶନିକ ସ୍ପିନୋଜାଙ୍କ ଉପରେ ଗବେଷଣା ଚଳାଇଥିଲେ । ସେ ଚିତ୍ତରଂଜନ ଦାସଙ୍କର ଥିଲେ ଅନ୍ୟ ଏକ ଆଦର୍ଶ । ତାଙ୍କର ପୁସ୍ତକମାନଙ୍କରେ ମସ୍ତିଷ୍କର ସମସ୍ତ ପ୍ରକାର ପ୍ରଖରତା ଓ ତୀକ୍ଷ୍ଣତାର ପ୍ରୟୋଗ ଶ୍ରୀଯୁକ୍ତ ଦାସଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଭାରତୀୟ ଦର୍ଶନ ସହିତ ଓଡିଆ ବିଭାଗରେ ମଧ୍ୟ ସେ ଗବେଷଣା କରିଥିଲେ । ପଞ୍ଚସଖା ସାହିତ୍ୟ, ଭୀମ ଭୋଇ ଏବଂ ବଳରାମ ଦାସଙ୍କ ଉପରେ ଗବେଷଣା ଚଳାଇ ଓଡିଆ ସାହିତ୍ୟର ଜ୍ଞାନ ଓ ଗବେଷଣାକୁ ଯଥା ସମ୍ଭବ ବାସ୍ତବଭିମୁଖି କରିବାର ଉଦ୍ୟମ ତାଙ୍କର ଅବ୍ୟାହତ ଥିଲା । ସେଠାରେ ମଧ୍ୟ ସେ ରବୀନ୍ଦ୍ର ନାଥଙ୍କର ଅନେକ ରଚନାବଳୀ ପଢ଼ିଥିଲେ । ଅଜସ୍ର ବହି ସେ ପଢ଼ିଛନ୍ତି ବିଶ୍ୱଭାରତୀରେ ହୃଦୟପୂର୍ଣ୍ଣ ହୋଇଉଠିଛି ତାଙ୍କର । ମଣିଷ ପରି ମଣିଷ ଟିଏ ହେବାର ସୌଭାଗ୍ୟ ମିଳିଛି ତାଙ୍କୁ ଏହି ପୁସ୍ତକାବଳୀର ଆଶୀର୍ବାଦରେ ଜ୍ଞାନ ଆହରଣ ମାଧ୍ୟମରେ ।

**ବିଦେଶ ଯାତ୍ରା**

ଚିତ୍ତରଂଜନ ଦାସ ଜୀବନରେ ଥରେ କିମ୍ବା ଦୁଇଥର ବିଦେଶ ଯାତ୍ରା କରି ନାହାନ୍ତି, ବହୁବାର ଯାଇଛନ୍ତି । ଏବେ ମଧ୍ୟ ବିଦେଶଯାତ୍ରାରୁ ସେ ବିରତ ନୁହଁନ୍ତି । ବିଶ୍ୱର ବହୁସ୍ଥାନ ଭ୍ରମଣରେ ତାଙ୍କର ଜ୍ଞାନଚକ୍ଷୁ ଆହୁରି ପ୍ରସାରିତ ହେଇଛି । ପୃଥିବୀର ସର୍ବାପେକ୍ଷା ଶୀତଳ ତମ ସ୍ଥାନରେ ରହିବାରେ ତାଙ୍କୁ ମିଳିଛି ପ୍ରକୃତ ଆନନ୍ଦ । ଅନେକ ଗ୍ରାମର ପରିବାର ସହିତ ଆତ୍ମୀୟତାର ସୂତ୍ରରେ ବାନ୍ଧି ହୋଇପଡିଛନ୍ତି । କେତେବେଳେ ସରକାରଙ୍କ ଠାରୁ ବୃତ୍ତିଲାଭ କରି ଶିକ୍ଷା ଓ ଗବେଷଣା ପାଇଁ ବିଦେଶ ଯାଇଛନ୍ତିତ ଅନେକ ସମୟରେ ବାହାର ଦେଶରେ ଶିକ୍ଷାଦାନ କରିବାର ସାଦର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ ନକରି ତାଙ୍କୁ ବିଦେଶ ଯିବାକୁ ପଡିଛି । ଇଉରୋପ ମହାଦେଶ ତାଙ୍କ ପାଇଁ ହୋଇପଡିଛି ଅତି ଆପଣାର । ଏହି ମହାଦେଶର ନବେଭାଗ ରାଜ୍ୟ ସେ ପରିଭ୍ରମଣ କରିଛନ୍ତି ।

ପ୍ରଥମେ ୧୯୫୦ ମସିହାରେ ବୃତ୍ତିଲାଭ କରି ସେ ଉଚ୍ଚଶିକ୍ଷା ପାଇଁ ଡେନ୍‌ମାର୍କ ଯାତ୍ରା କରିଥିଲେ । ପୂର୍ବରୁ ଶାନ୍ତିନିକେତନରେ ସେ ଦର୍ଶନ ଓ ସାହିତ୍ୟ ପଢ଼ିଥିଲେ । ତାହାର ପ୍ରମାଣ ପତ୍ର ମଧ୍ୟ ତାଙ୍କ ପାଖରେ ଥିଲା । ତେଣୁ ସେ ଡେନମାର୍କର ରାଜଧାନୀ କୋପେନ୍ ହେଗେନ୍‌ସ୍ଥିତ ବିଶ୍ୱ ବିଦ୍ୟାଳୟରେ ଦର୍ଶନ ଅଧ୍ୟୟନ କରିବାକୁ ଅଧିକ ଆଗ୍ରହୀ ଥିଲେ କିନ୍ତୁ ପ୍ରଫେସର ହେନରିକସନ୍ ତାହାରମୋଡ ବଦଳାଇ ଦେଲେ । ଭାରତୀୟ ଦର୍ଶନର ପ୍ରକୃତ କ୍ଷେତ୍ର ଭାରତ ବର୍ଷ । ଏଠାରେ ତାଙ୍କର ସେ

ଜ୍ଞାନ ଚରିତାର୍ଥ ହୋଇପାରିବ ନାହିଁ । ହେନେରିକ୍‌ସନଙ୍କର ପରାମର୍ଶ ଓ ଦୃଢ଼ ଯୁକ୍ତି ଯୋଗୁ ସେ ସେଠାରେ ଭାରତୀୟ ଦର୍ଶନ ପଢ଼ି ମନୋବିଜ୍ଞାନ ବିଭାଗରେ ନାମ ଲେଖାଇଥିଲେ । କୋପେନ୍ ହେଗେନ୍ ବିଶ୍ୱ ବିଦ୍ୟାଳୟରେ ଶିକ୍ଷାର ମାଧ୍ୟମ ଇଂରାଜୀ ନଥିଲା ଥିଲା ଡେନିଶ୍ ଭାଷା । ତେଣୁ ସେ ଡେନିଶ୍‌ଭାଷା ଶିଖିଲେ, ପଢ଼ିଲେ ଲେଖିଲେ ଓ ଏହି ଭାଷାରେ ମଧ୍ୟ କଥାବାର୍ତ୍ତା କଲେ । ଫଳରେ ସେଠାରେ ତାଙ୍କର ପରିଚୟ ବୃଦ୍ଧି ପାଇଲା । ବହୁ ପରିବାର ତରଫରୁ ସେ ନିମନ୍ତ୍ରିତ ହେଲେ । ସେ ଏଠାରେ ବହିଠାରୁ ଅଧିକ ଭଲ ପାଇଲେ ମଣିଷମାନଙ୍କୁ । ଇଉରୋପର ତିନୋଟି ଦେଶ ଡେନମାର୍କ, ଫିନଲ୍ୟାଣ୍ଡ ଓ ଜର୍ମାନୀରେ ତାଙ୍କର ଆତ୍ମୀୟତା ଅଧିକ ବୃଦ୍ଧି ପାଇଥିଲେ ହେଁ ନରୱେ ଓ ସୁଇଡେନର ଆକର୍ଷଣ ତାଙ୍କ ପାଇଁ ମଧ୍ୟ କମ୍ ନଥିଲା । ତାଙ୍କର ଜ୍ଞାନର ପରିସର ବୃଦ୍ଧିପାଇଁ କେବଳ କୋପେନ୍ ହେଗେନସ୍ଥିତ ବିଶ୍ୱ ବିଦ୍ୟାଳୟର ପାଠାଗାର ନୁହେଁ ଏହି ମହାଦେଶର ଅନେକ ବିଶ୍ୱବିଦ୍ୟାଳୟର ପାଠାଗାରକୁ ସେ ଯାଇଥିଲେ । ଅପର୍ଯ୍ୟାପ୍ତ ପୁସ୍ତକ ମଧ୍ୟରେ ନିଜକୁ ସେଠାରେ ହଜାଇ ଦେଇଥିଲେ ଚିତ୍ତରଂଜନ । ଭାରତ ଛାଡ ଆନ୍ଦୋଳନରେ ଜେଲ ଜୀବନ ଏବଂ ଶାନ୍ତି ନିକେତନର ଜନନୀ ସଦୃଶ କ୍ରୋଡ ତାଙ୍କ ପାଇଁ ଜୀବନଟିଏ ବାଛିବା ପାଇଁ ଉପଯୁକ୍ତ ପରିସର ସୃଷ୍ଟିକରିଥିଲା । ସେ ସେଠାରେ ମନୋବିଜ୍ଞାନ ସହିତ ସମାଜ ବିଜ୍ଞାନ ଓ ସାଂସ୍କୃତିକ ନୃତତ୍ତ୍ୱ ମଧ୍ୟ ଅଧ୍ୟୟନ କଲେ । ଫିନ ଲ୍ୟାଣ୍ଡରେ ତାଙ୍କର ଅଧିକ ସମୟ କଟିଥିଲା । ଫିନ୍‌ଲ୍ୟାଣ୍ଡର ଭାଷା ସହିତ ବିଶ୍ୱର କୌଣସି ଦେଶର ଭାଷା ମେଳ ନାହିଁ କିନ୍ତୁ ଶ୍ରୀଯୁକ୍ତ ଦାସ ଖୁବ୍ କମ ଦିନ ମଧ୍ୟରେ ଫିନ୍‌ଲ୍ୟାଣ୍ଡର ଫିନିଶ୍ ଭାଷା ସହିତ ପରିଚିତ ହୋଇଗଲେ । ଫିନଲ୍ୟାଣ୍ଡର ସାହୋପୁର ତାଙ୍କ ପାଇଁ ଅତ୍ୟନ୍ତ ପ୍ରିୟ ଗ୍ରାମ ଥିଲା । ସେହିପରି ଡେନମାର୍କର ଯର୍ଗନର ପରିବାର ତାଙ୍କ ପାଇଁ ଥିଲା ଅତିଆପଣାର । ପାରିସ, ହଲାଣ୍ଡ ଲାଇଡେନ୍‌ର ବିଭିନ୍ନ ସ୍ଥାନ ଭ୍ରମଣ କରି ଅନେକ ପାଠାଗାର ଓ ସଂଗ୍ରହଶାଳୟ ମାନଙ୍କରୁ ସେ ତଥ୍ୟଭିତ୍ତିକ ଜ୍ଞାନ ଆହରଣ କରିଥିଲେ । ଫିନଲ୍ୟାଣ୍ଡରେ ହୋସିଆ ପରିବାରକୁ ସେ ନିଜ ପରିବାର ପରିମନେ କରୁଥିଲେ । ଅଷ୍ଟ୍ରିଆରେ ପ୍ରଫେସର ହାନ୍‌ସଙ୍କ ସହିତ ତାଙ୍କର ଭେଟହେଲା । ଜର୍ମାନୀ ଭାଷା ତାଙ୍କୁ ଶିକ୍ଷା କରିବାକୁ ପଡିଥିଲା । ଜ୍ଞାନ ଆହରଣକୁ ପ୍ରାଧ୍ୟାନ୍ୟ ଦେଇ ସେ ଇଟାଲୀ, ରୋମ, ନେଲପସ୍, ନାପୋଲି, ଇସ୍ରାଏଲ ଆଦି ଇଉରୋପର ବହୁ ଦେଶ ଭ୍ରମଣ କରିଛନ୍ତି । ଏହି ଅଧ୍ୟୟନ କାଳରେ ସେ ମଣିଷ ଓ ତାର ଜୀବନ ସଂପର୍କରେ ଅଧିକ ଜାଣିବାକୁ ପାଇଛନ୍ତି । ପାଠପଢ଼ା ଶେଷ କରି ସେ ୧୯୫୪ ମସିହାରେ ଭାରତ ଫେରିଛନ୍ତି ।

ପରେ ୧୯୬୨ ମସିହାରେ ପଶ୍ଚିମ ଜର୍ମାନୀ ଅନ୍ତର୍ଗତ ସେ ନେନ୍‌ବର୍ଗ ଆନ୍ତର୍ଜାତିକ ଶିକ୍ଷା କେନ୍ଦ୍ରରେ ଅଧ୍ୟାପକ ରୂପେ ତାପରେ ସ୍ୱିଜରଲ୍ୟାଣ୍ଡର ଗ୍ରାଗେନଠାରେ ଅଧ୍ୟାପନା ପାଇଁ ସେ ବିଦେଶ ଯାଇଛନ୍ତି । ସେହିପରି ତାଙ୍କୁ ୧୯୮୫ରେ ଚୀନ, ୧୯୮୮ରେ ସୋଭିଏତ୍‌ରୁଷିଆ, ୧୯୮୯ରେ ଫିନଲ୍ୟାଣ୍ଡ, ୧୯୯୦-୯୧ରେ ପୁଣି ତିନିମାସ ପାଇଁ ଇସ୍ରାଏଲ ଯିବାକୁ ପଡିଛି । ବହୁ ଆଦର୍ଶ ଶିକ୍ଷକଙ୍କୁ ପାଇ ସେ ସେମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ତେଣୁ ଶିକ୍ଷକ ହେବାର ଲକ୍ଷ୍ୟ ରଖି ସେ ବିଶ୍ୱର ବହୁସ୍ଥାନକୁ ଯାଇଛନ୍ତି । ବ୍ୟକ୍ତିତ୍ୱ ବିକସିତ ହୋଇଛି । ଆନନ୍ଦ ବାଣ୍ଟିଛନ୍ତି । ନୂତନ ନୂତନ୍ ଦିଗ୍ ଦର୍ଶନ ଦେଇଛନ୍ତି ଛାତ୍ର ଛାତ୍ରୀମାନଙ୍କୁ ।

**ବିଦେଶରୁ ଫେରିବାପରେ**

ଚିତ୍ତରଂଜନ ଦାସ ପାଞ୍ଚବର୍ଷ ଉଚ୍ଚଶିକ୍ଷା ଲାଭ କରି ୧୯୫୪ ମସିହାରେ ଡେନମାର୍କରୁ ଫେରିଲେ । କିଛି ଦିନ ତାଙ୍କର ପ୍ରିୟସ୍ଥାନ ଶାନ୍ତିନିକେତନରେ ରହିବାପରେ ସେ ଫେରି ଆସିଲେ ଓଡିଶାକୁ, ନିଜର ମାତୃଭୂମିକୁ । ସ୍ଥିର ହୋଇ ବସିବା ମଣିଷ ସେ ନୁହଁନ୍ତି । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଠାରୁ ଅନୁମତି ପ୍ରାପ୍ତ ହୋଇ ସେ ଅନୁଗୁଳର ଚମ୍ପତିମୁଣ୍ଡା ଠାରେ ଗୋଟିଏ ନୂତନ ଧରଣର ବିଦ୍ୟାଳୟ ଆରମ୍ଭ କଲେ । ଏହି ବିଦ୍ୟାଳୟର ନାମ ଥିଲା "ଜୀବନ ବିଦ୍ୟାଳୟ" ଶିକ୍ଷା ବ୍ୟତୀତ ଜୀବନ କିପରି ସ୍ୱାବଲମ୍ବୀ ହୋଇ ବଞ୍ଚିବାକୁ ହେବ ତାହା ଏଠାରେ ଶିକ୍ଷା ଦିଆଯାଉଥିଲା । ଚିତ୍ତ ରଂଜନ କିନ୍ତୁ ଏହି ଅବସ୍ଥାନରେ ସ୍ଥିର ହୋଇ ରହିପାରି ନଥିଲେ । ୧୯୫୮ ମସିହାରେ ତାଙ୍କୁ ଅଗ୍ରା ନିକଟସ୍ଥ ବିଚିପୁରଠାରେ ଥିବା ବଳବନ୍ତ ବିଦ୍ୟାପିଠକୁ ଅଧ୍ୟାପକଭାବରେ ଯିବାକୁ ପଡିଥିଲା । ଏହି ଅନୁଷ୍ଠାନ ଗୋଟିଏ ଆଦର୍ଶ ଅନୁଷ୍ଠାନ ଥିବାରୁ ଦେଶ ବିଦେଶରୁ ବହୁ ଛାତ୍ର ବିଚିପୁରଠାରେ ଥିବା ଗ୍ରାମୀଣ ଉଚ୍ଚ ଶିକ୍ଷା ଅନୁଷ୍ଠାକୁ ଅଧ୍ୟୟନ ପାଇଁ ଆସୁଥିଲେ । ଚିତ୍ତ ରଂଜନଙ୍କ ଉଚ୍ଚ କୋଟୀର ଶିକ୍ଷାଦାନରେ ସମସ୍ତେ ଆକର୍ଷିତ ହୋଇ ଉଠିଥିଲେ । ଏଠାରେ ଅଧ୍ୟାପନା ପାଇଁ ତାଙ୍କୁ ଦୀର୍ଘ ଷୋଳବର୍ଷ କଟାଇବାକୁ ପଡିଥିଲା ।

୧୯୭୦ ମସିହା ବେଳକୁ ଚିତ୍ତରଂଜନଙ୍କ ଭାଗ୍ୟରେ ଆଉ ଗୋଟିଏ ସୁଯୋଗ ପହଞ୍ଚିଲା । ଶ୍ରୀ ଅରବିନ୍ଦଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କର କେତୋଟି ରଚନାକୁ ଓଡିଆରେ ଅନୁବାଦ କରିବାଲାଗି ପଣ୍ଡିଚେରୀ ଶ୍ରୀ ଅରବିନ୍ଦ ଆଶ୍ରମ ତରଫରୁ ଗୋଟିଏ ଯୋଜନା ପ୍ରସ୍ତୁତ ହୋଇଥିଲା ତଦନୁସାରେ The Life Divine, The Synthesis of Yoga, The Human cycle ଏବଂ The

Ideal of Human unity ଏହି ଚାରୋଟି ପୁସ୍ତକର ଅନୁବାଦ ଚିତ୍ତରଂଜନଙ୍କ ଉପରେ ପଡ଼ିଲା । ସେତେବେଳେ ଭୁବନେଶ୍ୱରରେ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାର ଏକ ପ୍ରୟୋଗ ଆରମ୍ଭ ହୋଇ ସାରିଥାଏ । ତାଙ୍କୁ ଏହି ଶିକ୍ଷା କେନ୍ଦ୍ରର ନିର୍ଦ୍ଦେଶକ ରୂପେ ବସାଇ ଦିଆଗଲା । ବନ୍ଧୁ ଶ୍ରପ୍ରପତ୍ତିଙ୍କ ପ୍ରେରଣା ଓ ଅନୁରୋଧରେ ଶ୍ରୀ ଅରବିନ୍ଦ ପାଠଚକ୍ର ଓ ପୂର୍ଣ୍ଣାଙ୍ଗ ଶିକ୍ଷାର ଆନ୍ଦୋଳନରେ ସେ ନିଜକୁ ପୂର୍ଣ୍ଣରୂପରେ ନିୟୋଜିତ କରି ରଖିଲେ । ସମୟ କ୍ରମେ ୧୭ ଖଣ୍ଡ ବିଶିଷ୍ଟ ମାତୃ ରଚନାବଳୀର ସମଗ୍ର ଅନୁବାଦ କାର୍ଯ୍ୟ ତାଙ୍କ ଦ୍ୱାର ସମ୍ପନ୍ନ ହେଲା । ଶ୍ରୀ ଅରବିନ୍ଦଙ୍କ ପୂର୍ଣ୍ଣଯୋଗ ଏବଂ ପୂର୍ଣ୍ଣାଙ୍ଗ ଶିକ୍ଷାର ଆଦର୍ଶ ଓ ବିଚାରଧାରାକୁ ଲୋକଙ୍କ ନିକଟରେ ପହଞ୍ଚାଇବାରେ ତାଙ୍କର ନିଷ୍ଠାପର ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ୧୯୭୨ ମସିହାରୁ ଏପର୍ଯ୍ୟନ୍ତ ସେ ଏହି କର୍ମ ସହିତ ଓତଃ ପ୍ରୋତ ଭାବରେ ଜଡିତ ଅଛନ୍ତି । ଶ୍ରମ ଶିବିର, ପାଠଚକ୍ର ଏବଂ ଓଡିଶାର ବିଭିନ୍ନ କେନ୍ଦ୍ରରେ ତାଙ୍କର ଉପସ୍ଥିକୁ ସ୍ୱାଗତ କରାଯାଇଥାଏ ।

ଚିତ୍ତରଂଜନ ଜଣେ ସ୍ୱାଧୀନଚେତା ମଣିଷ । ଭିନ୍ନ ରୁଚିର ଉଚ୍ଚ ଚିନ୍ତା ଧାରାର । ମଣିଷ ଜୀବନକୁ ବାସ୍ତବ ଅଧ୍ୟୟନ ପାଇଁ ବିଶ୍ୱର ବହୁଦେଶ ସେ ଗଲେ । ସର୍ବତ୍ର ପ୍ରଶଂସିତ ହୋଇଛନ୍ତି । ଦେଶର ଟେକ ରଖିଛନ୍ତି । ବାପା ମାଁଙ୍କର ସୁନାମ ବଢ଼ିଛି । କିନ୍ତୁ କାହାର ଆକର୍ଷଣରେ ସେ ବାନ୍ଧି ହୋଇ ଯାଇନାହାନ୍ତି । ପଢୁ ପଢୁ ଶିକ୍ଷକ ହେବାର ପଥକୁ ଆପଣେଇ ନେଇଛନ୍ତି । କିନ୍ତୁ ଶିକ୍ଷକତା କରି ନାହାନ୍ତି ପେଟପୋଷିବା ଅଥବା ଜୀବିକା ନିର୍ବାହ ଲକ୍ଷ୍ୟ ଆଖିଆଗରେ ରଖି । ନାଁ କମାଇ ଉଚ୍ଚକୁ ଉଠିବାକୁ ସେ ପସନ୍ଦ କରି ନାହାନ୍ତି । ଉପେକ୍ଷା କରିଛନ୍ତି ପଦପଦବୀକୁ । କ୍ଷମତାର ମୋହଠାରୁ ରହିଯାଇଛନ୍ତି ଅନେକ ଦୂରରେ । ବିରାଟ ଦୁନିଆଁ ନିକଟରେ ସେ ଖୁବ ଛୋଟ ହୋଇଛନ୍ତି । ପ୍ରଜ୍ଞାସିକ୍ତ ମଣିଷ ଚିତ୍ତରଂଜନ ନିଜର ଜ୍ଞାନକୁ ସୀମିତ ମନେ କରିଛନ୍ତି । କିନ୍ତୁ ତାଙ୍କର ନିଷ୍ଠାପର ବ୍ୟକ୍ତିତ୍ୱର ସୁରଭି ବହୁଦୂର ପର୍ଯ୍ୟନ୍ତ ପ୍ରସାରି ଯାଇଛି ।

**ସାଂସାରିକ ଜୀବନ**

ଚିତ୍ତରଂଜନଙ୍କ ଜୀବନରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଭୂମିକା ଅବିସ୍ମରଣୀୟ ଥିଲା । ମାଳତୀ ଚୌଧୁରୀଙ୍କୁ ସେ ମା' ବୋଲି ମନେକରୁଥିଲେ । ଚିତ୍ତରଂଜନ ୧୯୫୪ ମସିହାରେ ଡେନମାର୍କରୁ ଫେରିବାପରେ ପରିବାରର ନିଷ୍ପତ୍ତି ଓ ମାଳତୀ ଚୌଧୁରୀଙ୍କର ଆଦେଶ କ୍ରମେ ପ୍ରମିଳା ନାମ୍ନୀ ଗୋଟିଏ ଝିଅକୁ ବିବାହ କରିଥିଲେ କିନ୍ତୁ ଆଗ୍ରାରେ ଶିକ୍ଷକତା କରୁଥିବା ବେଳେ ତାଙ୍କର ବିୟୋଗ ହୋଇଥିଲା । ବିବାହ ବିଚ୍ଛେଦ ଆଘାତକଲା ତାଙ୍କୁ । କିଛି ଦିନ ଅଧ୍ୟାପନା ପାଇଁ ଜର୍ମାନୀ

ପଳାଇଲେ । ପରିବାରର ଚାପରେ ସେ ୧୯୬୭ ମସିହାରେ କଟକ ମେଡିକାଲ କଲେଜରେ ଅଧ୍ୟାପନା କରୁଥିବା ଉଷାଙ୍କ ସହିତ ତାଙ୍କର ଦ୍ୱିତୀୟ ବିବାହ ସଂପନ୍ନ ହେଲା । ଭୁବନେଶ୍ୱରରେ ବିବାହ ସାରି ସେ ବାଗଲପୁର ଆସିଲେ। ୧୯୬୮ ମସିହାରେ ପୁଅ ମାନବେନ୍ଦ୍ର ଜନ୍ମ ଗ୍ରହଣ କଲା । ସେତେବେଳେ ଚିତ୍ତରଂଜନ ଆଗ୍ରାରେ ଥିଲେ । ୧୯୪୫ ମସିହାରେ ସେ ଓଡିଶା ଛାଡିଥିଲେ ସତ କିନ୍ତୁ ଠିକ୍ ତାର ପଚିଶ ବର୍ଷପରେ ଅର୍ଥାତ୍ ୧୯୭୦ ମସିହାରେ ଓଡିଶାକୁ ଫେରି ଆସିଲେ। ସନ୍ତାନର ଆକର୍ଷଣରେ ଏକାବେଳେ ସେ ବାନ୍ଧି ହୋଇ ପଡିଲେ । ସେ ଯୁଆଡେ ଯାଉଥିଲେ ପୁଅକୁ ସାଇକେଲରେ ବସାଇ ନେଉଥିଲେ । ପୁଅ ମାନବେନ୍ଦ୍ରକୁ ଚଉଦ ବର୍ଷ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ ଚିତ୍ତରଂଜନ ସ୍ତ୍ରୀ ଓ ପୁଅକୁ ନେଇ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣରେ ଯାଉଥିଲେ । ସେ ଯାତ୍ରା କରିଥିବା ସ୍ଥାନମାନଙ୍କ ମଧ୍ୟରେ ପଣ୍ଡିଚେରୀ, ଜବ୍ବଲପୁର, ନାଗପୁର, ସେବାଗ୍ରାମ, ଶାନ୍ତି ନିକେତନ, ବନାରସ, କେରଳ, କୋଡାଇ କେନାଲ, ମଦୁରାଇ, ବାଙ୍ଗାଲୋର, ହାଇଦ୍ରାବାଦ, ଧରଓ୍ୱାଡ, କଲିକତା, ହାଟକଲ୍ୟାଣୀ, ବଦ୍ରୀନାଥ ଓ ନୈନିତାଲ ଆଦି ଅନ୍ତର୍ଭୁକ୍ତ। ମାନୁ ଏକମାତ୍ର ପୁଅ ଥିବାରୁ ସେ ବହୁତ ଅଲିଅଳରେ ବଢ଼ିଥିଲା । ସେ ବାଙ୍ଗାଲୋରରେ ଇଂଜିନିୟରିଂ ପଢ଼ିଲା ବେଳେ ଜଣେ କର୍ଣ୍ଣାଟକୀ ବ୍ରାହ୍ମଣ ପରିବାରର ଝିଅ ଯିଏ ତାର ସହାଧ୍ୟାୟୀ ଥିଲା ତାକୁ ବିବାହ ପାଇଁ ସ୍ଥିର କଲା । ପୁଅର ଇଚ୍ଛାକ୍ରମେ ସେଠାର ତାର ବିବାହ ହେଲା । ଏବେ ପୁଅ ଓ ବୋହୂ ଉଭୟ ଆମେରିକାରେ ଇଂଜିନୟର ଅଛନ୍ତି ଏବଂ ସେମାନେ ଗୋଟିଏ କନ୍ୟା ଲାଭ କଲେଣି । ଚିତ୍ତ ଭାଇ ଏବେ ବାପୁଜୀନଗର ସ୍ଥିତ ୮୩ ଏ ବିଶ୍ୱନୀଡମ ନାମକ ନିଜ ବସାଘରେ ଅବସ୍ଥାନ କରୁଛନ୍ତି।

### ସାହିତ୍ୟ ସାଧନା

ଚିତ୍ତରଂଜନ ଦାସ ଓଡିଶାର ଜଣେ ବିଶିଷ୍ଟ ପ୍ରାବନ୍ଧିକ। ପ୍ରବନ୍ଧ ସାହିତ୍ୟକୁ ଲୋକପ୍ରିୟ କରାଇବାରେ ତାଙ୍କର ଉଲ୍ଲେଖନୀୟ ଅବଦାନ ଅତ୍ୟନ୍ତ ପ୍ରଶଂସନୀୟ। ଏଥିପାଇଁ ମଧ୍ୟ ସେ ନିରବଚ୍ଛିନ୍ନ ଭାବରେ ସାଧନାରତ। କିନ୍ତୁ ପ୍ରାଥମିକ ଅବସ୍ଥାରେ ଚିତ୍ତରଂଜନ ପ୍ରବନ୍ଧକୁ ପ୍ରାଣଭରି ଭଲପାଇ ନଥିଲେ। କବିତା ଲେଖିବା ଓ ନାଟକ ରଚନା କରିବାରେ ତାଙ୍କର ଆଗ୍ରହ ଥିଲା। କଟକ ଓ ବାଙ୍ଗାଲୋର ଜେଲରେ ଥିବାବେଳେ ସେ ଅନେକ ଗୁଡିଏ କବିତା ଲେଖିଛନ୍ତି। ହାଇସ୍କୁଲ ଜୀବନରୁ ତାଙ୍କର ଲେଖା ଲେଖି ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା । ମାଟ୍ରିକ୍ ପରୀକ୍ଷାପରେ ସେ ବଡ ଭାଇଙ୍କ ଚାକିରୀ ଜାଗା ଗଂଜାମ ଜିଲ୍ଲାର ବଡଗଡ ଯାଇଥିଲେ। ସେଠାର ଶ୍ରୀ ରାମ

ପ୍ରସାଦ ସିଂହଙ୍କର 'ଯୁଗାନ୍ତର' ଉପନ୍ୟାସଟିକୁ ନାଟ୍ୟରୂପ ଦେଲେ ଏବଂ ତାହା ଗ୍ରୀଷ୍ମଛୁଟିରେ 'ପୁନିଅଁ' ନାମରେ ବାଗଲପୁରରେ ମଞ୍ଚସ୍ଥ ହୋଇଥିଲା । ଜେଲରୁ ମୁକୁଳିବା ପରେ କାଳନ୍ଦି ଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' ଉନ୍ୟାସଟି ମଧ୍ୟ ତାଙ୍କ ଦ୍ୱାରା ନାଟ୍ୟରୂପ ଦିଆଯାଇଥିଲା । ସେ ମଧ୍ୟ ମଞ୍ଚସ୍ଥ ହୋଇଥିବା ନାଟକରେ ବରଜୁ ଭୂମିକାରେ ଅଭିନୟ କରିଥିଲେ । ଶାନ୍ତିନିକେତନରେ ମଧ୍ୟ ରସମୟ ପରିବେଶ ପ୍ରତି ତାଙ୍କର ଆକର୍ଷଣ କମ୍ ନଥିଲା । ନାଟକ ଦେଖିବା, ସଙ୍ଗୀତ ଶୁଣିବା ଓ କବିତା ଲେଖିବାରେ ସେ ଅଶେଷ ଆନନ୍ଦ ଲାଭ କରୁଥିଲେ । ପ୍ରଥମେ ଚିତ୍ତରଂଜନ ପାରମ୍ପରିକ କୌଶଳରେ ପଦକୁ ପଦ ମିଳାଇ କବିତା ଲେଖୁଥିଲେ । ରେଭେନ୍ସା କଲେଜରେ ପଢୁଥିବାବେଳେ 'ପାଗଳ ସର୍ଦ୍ଦାର' ବୋଲି ଗପଟିଏ ମଧ୍ୟ ସେ ଲେଖିଛନ୍ତି । ଶାନ୍ତି ନିକେତନରେ ଥିବା ସମୟରେ ପ୍ରଜାତନ୍ତ୍ର ସମ୍ବାଦ ପତ୍ରର ମୀନାବଜାର ସ୍ତମ୍ଭରେ ଅନେକ ପଦ୍ୟ ଓ ଗଦ୍ୟ ଲେଖା ତାଙ୍କର ପ୍ରକାଶ ପାଇଛି । ୧୯୪୮ ମସିହାରେ ଢେଙ୍କାନାଳର ବାଜିରାଉତ୍ ଉପରେ କବିତାଟିଏ ଲେଖି ''କୃଷକ ସାପ୍ତାହିକୀ ପତ୍ରିକାରେ ଛପାଇଛନ୍ତି । ତାଙ୍କର ଭାବନାର ବଳୟ ମଧ୍ୟରେ ପ୍ରିୟଥିଲେ ରବୀନ୍ଦ୍ର ନାଥ, ଭିନୋବା, ଅରବିନ୍ଦ, ଗୋପବନ୍ଧୁ ଓ ମହାତ୍ମାଗାନ୍ଧୀ । ଗାନ୍ଧିଜୀଙ୍କ ଜାତୀୟବାଦୀ ଭାବନା ତାଙ୍କୁ ବହୁମାତ୍ରାରେ ପ୍ରଭାବିତ କରିଥିଲା । ଦେଶ ସ୍ୱାଧୀନ ହେବାପରେ ଯେଉଁ ଆଧୁନିକ ପନ୍ଥୀ ଲେଖକ ବାହାରିଲେ ତାଙ୍କୁ ବୁଝିବା କଠିନ ହୋଇ ପଡିଲା । ଏହି ଧାରା କବିତାରୁ ନାଟକକୁ ମଧ୍ୟ ସଂକ୍ରମିତ ହେଲା । ଚିତ୍ତରଂଜନ ଏହାର ପରିପନ୍ଥୀ ଥିଲେ । ତାଙ୍କୁ ଜୀବନ ପରି ସାହିତ୍ୟ ଭଲ ଲାଗୁଥିଲେ ହେଁ ଜୀବନ ସହିତ ସଂପର୍କ ଛିନ୍ନ କରି ସୃଷ୍ଟି ହେଉଥିବା ଗଳ୍ପ, କବିତା ଓ ନାଟକ ଆଦିରୁ ମାୟା ତୁଟାଇ ଦେଇଥିଲେ । ପ୍ରବନ୍ଧ, ରମ୍ୟରଚନା ଓ ଭ୍ରମଣ କାହାଣୀ ଆତ୍ମିକ ଓ ଆଙ୍ଗିକରେ ବୃଦ୍ଧି ପାଇଥିଲା । ତେଣୁ ସେ ଏହି ବାଟରେ ଯିବା ପାଇଁ ଅଧିକ ପସନ୍ଦ ମଣିଲେ । ତାଙ୍କ ଦୃଷ୍ଟିରେ ଜୀବନକୁ ବିଳାସ ମନେ କରୁଥିବା ମଣିଷ କବିତା, ଗପ, ଉପନ୍ୟାସ ଓ ନାଟକ ଆଦି ଲେଖି ଆନନ୍ଦ ପାଆନ୍ତି । ଶାନ୍ତି ନିକେତନର ମୁକ୍ତି ତାଙ୍କୁ ବହୁ ପରିମାଣରେ ପ୍ରବନ୍ଧ ଭିତରକୁ ଟାଣି ନେଇଥିଲା । ଇଂରାଜୀ ସାହିତ୍ୟ, ଭାରତର ଷଡ ଦର୍ଶନ, ଇଉରୋପୀୟ ମେଧା, ଚୀନ ଦେଶର ସାଂସ୍କୃତିକ ସଂପଦ ଏବଂ ଖ୍ରୀଷ୍ଟଆନ୍ ଧର୍ମର ସମ୍ବନ୍ଧ ଧାରାଟି ପ୍ରବନ୍ଧ ରଚନା ପାଇଁ ଅଧିକ ଆଗ୍ରହୋଦ୍ଦୀପକ ଥିଲା । ସମାଜ, ଜାତି, ଦେଶ, ସଭ୍ୟତା ଧର୍ମ ସେଥିରେ ମିଶିଯାଇଛି । ପ୍ରବନ୍ଧକୁ ଯଥା ସମ୍ଭବ ସହଜ, ସରଳ ଏବଂ କବିତା, ଗଳ୍ପ, ନାଟକ ପରି ସୁଖପାଠ୍ୟ କରିବାରେ ସେ ଅଧିକ ଆଗ୍ରହୀ ।

ଚିତ୍ତରଂଜନଙ୍କ ସର୍ବପ୍ରଥମ ଗଦ୍ୟ ଲେଖା ହେଲା ଭ୍ରମଣ କାହାଣୀ । ହିମାଳୟ ବକ୍ଷରେ ବଢୁଥିବା ନେପାଳକୁ ଦେଖି ସେ ଏତେ ଉଲ୍ଲସିତ ହୋଇ ଉଠିଥିଲେ ଯେ, ସେ ''ନେପାଳ ଚିଠି'' ନାମରେ ଅନ୍ତରଙ୍ଗ କାହାଣୀଟିଏ ଲେଖିଥିଲେ । ସେହିପରି ଓଡିଶାର ଗଂଜାମ ମାଳରେ ମୁଗ୍ଧହୋଇ ସେ ସାତଦିନ ମଧ୍ୟରେ ଭ୍ରମଣ କାହାଣୀ 'ଶିଳାତୀର୍ଥ' ଲେଖିଛନ୍ତି । ଚିତ୍ତରଂଜନ କୁହନ୍ତି ସେ ଭ୍ରମଣ କାହାଣୀର ଧାରାରେ ଚୀନ୍, ଇସ୍ରାଏଲ ଓ ଡେନମାର୍କ ଆସିଛନ୍ତି ସତ କିନ୍ତୁ ଶିଳାତୀର୍ଥ ଭଳି ଆନନ୍ଦ ତାଙ୍କୁ କେଉଁଠାରେ ମିଳିନାହିଁ । ଶାନ୍ତିନିକେତନରେ ପଢୁଥିବାବେଳେ ସେ ରବୀନ୍ଦ୍ର ନାଥ ଠାକୁରଙ୍କର ତିନୋଟି ବହି ଓ ଗୋଟିଏ ଉପନ୍ୟାସକୁ ଓଡିଆରେ ଅନୁବାଦ କରିଥିଲେ ଏବଂ ତାହା ପ୍ରକାଶ ପାଇଥିଲା । ୧୯୫୧-୫୨ ମସିହାରେ ଚିତ୍ତରଂଜନଙ୍କର ଡେନମାର୍କ ଚିଠି ଡଗର ପତ୍ରିକାରେ ଧାରାବାହିକ ପ୍ରକାଶ ପାଉଥିଲା । ସେହିପରି ଗ୍ରାମ ସେବକ ପତ୍ରିକାରେ ୧୯୫୫ ମସିହାରେ ପ୍ରକାଶ ପାଇଲା ଜଙ୍ଗଲ ଚିଠି । ରୋହିତର ଡାଏରୀ ତାଙ୍କର ଡାଏରୀ ରଚନାର ଏକ ଅଭିନବ ମାର୍ଗ ଉନ୍ମୋଚନ କଲା । ମଣିଷକୁ, ଜୀବନକୁ ଓ ଜଗତକୁ ସଠିକ୍ ରୂପ ଦେବାରେ ପ୍ରବନ୍ଧ ହିଁ ଏକମାତ୍ର ତାଙ୍କୁ ସହଯୋଗ କରିଛି । ଶାନ୍ତିନିକେତନରେ ଓଡିଶାର ମହିମାଧର୍ମ ପୁସ୍ତକ ରଚନା କରିଛନ୍ତି । ଆଗ୍ରାରେ ଥିବା ବେଳେ ତାଙ୍କର ଜୀବନ ବିଦ୍ୟାଳୟ ଓଡିଶାରେ ପ୍ରକାଶ ପାଇଥିଲା । ନୋବେଲ ପ୍ରାଇଜ୍ ବିଜେତା ବିଶ୍ୱସାହିତ୍ୟିକମାନଙ୍କର ବହୁ ରଚନା ସେ ଓଡିଆରେ ଅନୁବାଦ କରିଛନ୍ତି । ସେ ପ୍ରବନ୍ଧ ଓ ସମାଲୋଚନାର ଅଜସ୍ରସ୍ରାବୀ ଲେଖକ । ବହୁ ପତ୍ରପତ୍ରିକାରେ ତାଙ୍କର ପ୍ରବନ୍ଧ ପ୍ରକାଶ ପାଇ ପାଠକ ମାନଙ୍କୁ ନୂତନ ଦିଗ୍ ଦର୍ଶନ ଦେଇଥାଏ । ଚିତ୍ତରଂଜନଙ୍କର ଆଲୋଚନାରେ ତାଙ୍କର ବହୁ ଶାସ୍ତ୍ର ଦର୍ଶିତା ଓ ପ୍ରଚଣ୍ଡ ପ୍ରତିଭାର ଗୌରବୋଜ୍ୱଳ ସ୍ୱାକ୍ଷର ପ୍ରତିବିମ୍ବିତ ହୁଏ । ସେ ଜ୍ଞାନ ଆହରଣ କରିଛନ୍ତି, ବିତରଣ କରିଛନ୍ତି ଏବଂ ସାହିତ୍ୟ ସାଧନାରେ ଜୀବନକୁ ବିନିଯୋଗ କରିଚାଲିଛନ୍ତି । ସମୟତାଙ୍କ ପାଇଁ ଅନେକ ମୂଲ୍ୟବାନ, ଏ ବୟସରେ ମଧ୍ୟ ସେ ମୁନୀରଷି ନୁହଁନ୍ତ କିନ୍ତୁ ତତ୍ତ୍ୱଦର୍ଶୀ, ଓଡିଆ ସାହିତ୍ୟର ସକ୍ରେଟିସ୍ । ପ୍ରବନ୍ଧ ମାଧ୍ୟମରେ ସେ କେବଳ ସତ୍ୟକୁ ବାଣ୍ଟିବାକୁ ଉଦ୍ୟମ ଜାରି ରଖିଛନ୍ତି । ସେଥିପାଇଁ ସମଗ୍ର ଓଡିଆ ସାହିତ୍ୟରେ ତାଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ତାଙ୍କର ପ୍ରତିଭାର ବଳୟକୁ କଳନା କରିବା ଅତ୍ୟନ୍ତ କଷ୍ଟ ସାଧ୍ୟ ।

### ବିପୁଳ ସାହିତ୍ୟ କୃତି ମଧ୍ୟରୁ କେତୋଟି

ଚିତ୍ତରଂଜନ ଦାସଙ୍କର ଅସରନ୍ତି ସାହିତ୍ୟ ସାଧନା ଭିତରେ ସେ ବହୁ ପୁସ୍ତକ ରଚନା କରିଛନ୍ତି । ବିଗତ ଶତାବ୍ଦୀରୁ ଚଳିତ ଶତାବ୍ଦୀରୁ ପର୍ଯ୍ୟନ୍ତ ତାଙ୍କ ଲେଖନୀ

ଚଳଚଞ୍ଚଳ । ପ୍ରବନ୍ଧ, ସମାଲୋଚନା, ଭ୍ରମଣ କାହାଣୀ, ଗବେଷଣା, ଅନୁବାଦ, ଶିଶୁସାହିତ୍ୟ ସମ୍ପାଦନା ଆଦି ମଧ୍ୟରେ ସେ ସଂପୂର୍ଣ୍ଣ ସତ୍ତା ଶୂନ୍ୟ। ଦେଢ଼ଶହରୁ ଉର୍ଦ୍ଧ ପୁସ୍ତକର ରଚୟିତା ସେ । ସବୁକୁ ଏଠାରେ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ କରିବା ଅସମ୍ଭବ ହେଲେ ହେଁ ପ୍ରାସଙ୍ଗିକତା ଦୃଷ୍ଟିରୁ କେତେକ ରଚନାବଳୀର ନାମୋଉଲେଖ କରାଗଲା ।

**ପ୍ରବନ୍ଧ ଓ ରମ୍ୟରଚନା**

**ସମାଜ :** ପରିବର୍ତ୍ତନ ଓ ବିକାଶ (୧୯୬୮), ଶିଳା ଓ ଶାଳଗ୍ରାମ (୧୯୫୮) କେତେ ଦିଗନ୍ତ (୧୯୭୨) ତରଙ୍ଗ ଓ ତଡିତ୍ (୧୯୭୫) ମା ନିଷାଦ (୧୯୭୮) ଏକଲବ୍ୟ କାହାଣୀ ଓ ଅନ୍ୟାନ୍ୟ ପ୍ରବନ୍ଧ, (୧୯୭୮) ଜାତିରେ ମୁଁ ଯବନ (୧୯୭୯) ଶିକ୍ଷାରୁ ସଂକ୍ରମଣ (୧୯୮୧) ନଖଦର୍ପଣେନ (୧୯୮୨) ପଶ୍ୟତି ଦିଶି ଦିଶି (୧୯୮୬) ଅରମ୍ୟ ରଚନା (୧୯୮୬) ଓଡିଶା ଓ ଓଡିଶା (୧୯୮୮) ଆଉ ଏକ ଦୃଷ୍ଟିରେ (୧୯୯୦) ନେତା ଓ ନାରାୟଣ (୧୯୯୦) ବିଶ୍ୱକୁଗବାକ୍ଷ, ଶ୍ୱକର ଓ ସକେଟିସ୍, କାଳକୁ କତୂଳ ।

**ଗବେଷଣା ଓ ସମ୍ପାଦନା :** ବଳରାମ ଦାସଙ୍କ ଗୀତ, ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ (୧୯୫୧), ଷ୍ଟଡିଜ୍ ଇନ୍ ମେଡିଆଭାଲ ଭିଲିଜିଅନ୍ ଆଣ୍ଡ ଲିଟରେଚର ଅଫ ଓଡିଶା (ଇଂରାଜୀ-୧୯୫୧) ଓଡିଶାର ମହିମାଧର୍ମ (୧୯୫୨) ଆଲୋକର କବି ରବୀନ୍ଦ୍ର ନାଥ (୧୯୬୯) ବଳରାମ ଦାସ (ଇଂରାଜୀ-୧୯୮୨) ଭକ୍ତ ଚରଣ ଦାସ, ସନ୍ଥ ଭକ୍ତି ସାହିତ୍ୟ (୧୯୮୨) ଏ ଗ୍ଲିମ୍ପସ୍ ଇନ୍ ଟୁ ଓଡିଆ ଲିଟରେଚର (ଇଂରାଜୀ-୧୯୮୨)

କବିତା- ଦୁଇ ଅଧ୍ୟାୟ (୧୯୪୮)

**ଭ୍ରମଣ କାହାଣୀ**

ନେପାଳପଥେ (୧୯୪୮), ଗଞ୍ଜାମ ମାଳରେ ସାତଦିନ (୧୯୫୫), ସାଗର ଯାତ୍ରୀ (୧୯୫୫), ଡେନମାର୍କ ଚିଠି (୧୯୫୫), ଶିଳାତୀର୍ଥ, ଭାରତରୁ ଚୀନ (୧୯୮୧), ସମୁଦ୍ର ପଥ ଏରେଚ ଇସ୍ରାଏଲ୍

**ଅନୁବାଦ**

ମାଆ, ଦିବ୍ୟଜୀବନ (୩ଖଣ୍ଡ) ଯୋଗସମନ୍ୱୟ (୨ ଖଣ୍ଡ) ମାତୃ ରଚନାବଳୀ ( ୧୬ ଖଣ୍ଡ) ରବୀନ୍ଦ ଗଳ୍ପ ଚୟନ, ମୋ ଜୀବନ ଓ ସାଧନା, ଦାସୀ ସିଲିଆ,

ସମ୍ମୋହିନୀ, (ପ୍ରାଁ ରୋୟା ମରିଆକ୍) ଚାଷୀ (ଇଡିସ୍କସେଣ୍ଟରେମଣ୍ଟ) ଡକ୍ଟର ଜିଭାଗୋ (ବୋରିସ୍ ପ୍ରାସ୍ତଭନିକ୍) ରାଜକୁମାର, ପ୍ରଥମ ପ୍ରତିଶୃତି, (ଆଶାପୂର୍ଣ୍ଣ ଦେବୀ) ଯାତ୍ରୀ କାମନୀତ ।

## ପିଲାଙ୍କ ପାଇଁ ରଚନା

ମାର୍କୋ ପୋଲୋ, ପିଲାଙ୍କ ଗପ, ଗପ ଅଗପ, ଏସପ କଥା, ସତ୍ୟବ୍ରତର ସଂଶୟ, ଆଣ୍ଡର ସନ୍‌ଙ୍କ ଗପ, ସୁନ୍ଦର ଦେଶ, କେତେ ଦେଶର କଥା, ସୁନ୍ଦର ଦେଶ ଫିନଲ୍ୟାଣ୍ଡ ।

## ଡାଏରୀ ସାହିତ୍ୟ

ଜଙ୍ଗଲର ଚିଠି, ଜୀବନ ବିଦ୍ୟାଳୟ, ରୋହିତର ଡାଏରୀ (୨୦ ଖଣ୍ଡ)

ଆତ୍ମଜୀବନୀ- ମିତ୍ରସ୍ୟ ଚକ୍ଷୁସା (୩ ଖଣ୍ଡ)

## ପୁରସ୍କାର ଓ ସମ୍ମାନ

ଚିତ୍ତରଂଜନ ଦାସ ସକଳ ନାମ ଓ ଯଶର ଉର୍ଦ୍ଧ୍ୱରେ। ଯିଏ ପାଠପଢ଼ି ସାରାଜୀବନ ଶିକ୍ଷକତା ଭିତରେ କଟାଇଛନ୍ତି ବିନା ଅର୍ଥ ଉପାର୍ଜ୍ଜନରେ ତାଙ୍କ ପାଇଁ ପୁରସ୍କାର, ସମ୍ମାନ, କ୍ଷମତା, ପଦବୀ, ଟଙ୍କ ପଇସା ଗୋଟାଏ ମାମୁଲି କଥା। ସେ ପ୍ରଜ୍ଞା ପୁରୁଷ, ସ୍ଥିତପ୍ରଜ୍ଞ, ସର୍ବବିଧ ଉଦାରତାରେ ପରିପୂର୍ଣ୍ଣ ତାଙ୍କର ବ୍ୟକ୍ତିତ୍ୱ। ଗାନ୍ଧୀବାଦର ନିଛକ ନମୂନାଟି ସେ । ଖଦଡଲୁଗା କାମିଜୀ ପିନ୍ଧିବା ମଣିଷ । ସବୁବେଳେ ହସ ହସ । ତାଙ୍କର ବିପୁଳ ସାହିତ୍ୟକୃତି ଏ ଜାତି ପାଇଁ ସର୍ବଶ୍ରେଷ୍ଠ ଦାନ। ଏ ଦାନର କିଛି ପ୍ରତିଦାନ ନାହିଁ। ସାହିତ୍ୟର ପ୍ରକୃତ ବିଶ୍ଳେଷଣ କରନ୍ତି ପାଠକମାନେ, ବୁଦ୍ଧିଜୀବିମାନେ । କିନ୍ତୁ ଏ ଦେଶରେ ତାଙ୍କ ସାହିତ୍ୟ ପଢ଼ି ପ୍ରକୃତ ମୂଲ୍ୟାୟନ ପାଇଁ କେହି ଏପର୍ଯ୍ୟନ୍ତ ଆଗେଇ ଆସିବାକୁ ସାହସ କରୁ ନାହାନ୍ତି। ହୁଏତ ଅନେକଙ୍କ ଭିତରେ ଗୋଟାଏ ଭୟର ଭୂତ ପଶିଯାଇଛି । ତାଙ୍କ ବ୍ୟକ୍ତିତ୍ୱ କୁ ଉପଯୁକ୍ତ ମର୍ଯ୍ୟାଦା ଦିଆଯାଇ ନାହିଁ ବୋଲି । ତଥାପି ସେ ଚିତ୍ତରଂଜନ ଓ ତାଙ୍କ ସାହିତ୍ୟ ହିଁ ପ୍ରକୃତ ପାଠକ ପାଇଁ ଚିତ୍ତରଂଜନର ସହାୟକ । ସେ ପୁରସ୍କାର ନେବା ପାଇଁ ଉତ୍ସାହ ପ୍ରକାଶ କରୁନଥିଲେ ମଧ୍ୟ ତାଙ୍କୁ ''ଉତ୍କଳ ପାଠକ ସଂସଦ'' ଦ୍ୱାରା ସମ୍ବର୍ଦ୍ଧିତ କରାଯାଉଛି। ଅନେକ ଛୋଟ ବଡ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ହୋଇଛନ୍ତି। ତାଙ୍କର ସାହିତ୍ୟ କୃତିପାଇଁ ସେ ଓଡିଆ ସାହିତ୍ୟ ଏକାଡେମୀ ପୁରସ୍କାର (୧୯୬୧) ଶାରଳା ପୁରସ୍କାର (୧୯୮୯), ବିଷୁବ ପୁରସ୍କାର (୧୯୯୮) କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର

(୨୦୦୦) ଏବଂ ଉତ୍କଳ ଶ୍ରୀ ସମ୍ମାନ ଲାଭ କରିଛନ୍ତି । ଏହା ବସ୍ତୁତଃ ତାଙ୍କ ବିପୁଳ ପ୍ରତିଭା ନିକଟରେ ଖୁବ ନଗଣ୍ୟ । ଯାହାର ବ୍ୟକ୍ତିତ୍ୱକୁ ତତ୍‌କାଳୀନ ଡେନମାର୍କର ପ୍ରଧାନମନ୍ତ୍ରୀ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କୁ ଚିହ୍ନାଇ ଥିଲେ ଏବଂ ନେହେରୁ ଚିହ୍ନିବା ପାଇଁ ବ୍ୟଗ୍ର ହୋଇ ଓଡିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ବିବ୍ରତ କରିପକାଇଥିଲେ ତାଙ୍କୁ ଓଡିଶାର ଅଧିବାସୀ ଚିହ୍ନି ପାରିଲେନି। ତଥାପି ମହାତ୍ମାମାନଙ୍କ ପରି ସେ ସାଧନାମଗ୍ନ । ଉଭୟ ଜୀବନ ଓ ସାହିତ୍ୟକୁ ସମଉଚ୍ଚତାରେ ତୋଳି ଧରି ଆରାଧନା କରୁଥିବା ବ୍ୟକ୍ତିଟି ହିଁ କେବଳ ଚିତ୍ତରଂଜନ ଉତ୍କଳ ଶ୍ରୀ ଚିତ୍ତରଂଜନ ଦାସ ଆଉ କେହି ନୁହେଁ।

ଅଧ୍ୟାପକ ଓଡିଆ ବିଭାଗ
ଡି.କେ.ଏନ. କଲେଜ
ଏରଞ୍ଚ, କଟକ



# ସଂଗ୍ରାମୀ ଓ ସମାଜସେବୀ : ରବୀନ୍ଦ୍ର ମୋହନ ଦାସ

● ଡଃ ଭାଗୀରଥି ନାୟକ

ସମାଜସେବୀ ତଥା ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସ ୧୯୧୨ ମସିହା ଫେବୃଆରୀ ୧୨ ତାରିଖରେ ବାଲେଶ୍ୱର ସହରରେ ଅବସ୍ଥିତ ଗୋପାଳ ଗାଁରେ ଜନ୍ମଗ୍ରହଣ କରିଥିଲେ । ପିତା ଲକ୍ଷ୍ମୀନାରାୟଣ ଦାସଙ୍କର ସେ ହେଉଛନ୍ତି କନିଷ୍ଠ ସନ୍ତାନ । ଅସଂଖ୍ୟ ବାଉଁଶ ଗଛକୁ ନେଇ ଛାୟାଶୀତଳ ହୋଇଥିବା ଗୋପାଳ ଗାଁଆର ପ୍ରାକୃତିକ ପରିବେଶ ଥିଲା ମନଲୋଭା । ହରିଜନ ଓ ବଢ଼େଇ ଜାତିର ଲୋକମାନଙ୍କ ସହିତ ତାଙ୍କ ପିତାଙ୍କ ସଂପର୍କ ଉତ୍ତମ ଥିବା ହେତୁ ରବୀନ୍ଦ୍ର ମୋହନଙ୍କ ଉପରେ ଏହାର ଗଭୀର ପ୍ରଭାବ ପଡିଥିଲା । ରବୀନ୍ଦ୍ର ମୋହନ ଯେଉଁଦିନ ଜନ୍ମହେଲେ, ସେହିଦିନ ଏକ ପ୍ରସିଦ୍ଧ ଆନ୍ତର୍ଜାତିକ ଘଟଣା ଘଟିଥିବାର ଜଣାଯାଏ । କାରଣ ଠିକ୍ ସେହିଦିନ South Africa Congress ର ମଧ୍ୟ ଜନ୍ମଦିବସ, ଶିଶୁ ରବୀନ୍ଦ୍ରମୋହନଙ୍କ ଆନୁଷ୍ଠାନିକ ଶିକ୍ଷାର ସମୟ ସୀମା ଅତି ସଂକ୍ଷିପ୍ତ । ତେବେ ଆନୁଷ୍ଠାନିକ ଶିକ୍ଷାଲାଭ ପୂର୍ବରୁ ସେ ମାଣିଖମ୍ବରେ ଅବସ୍ଥିତ ଚାଟଶାଳୀକୁ ଯାଉଥିଲେ । ତୁଳସୀ ମିଶ୍ରଙ୍କ ଦାଣ୍ଡପିଣ୍ଡାରେ ଏହି ଚାଟଶାଳୀ ଚାଲିଥିଲା । ଯେତେବେଳେ ରବୀନ୍ଦ୍ରମୋହନଙ୍କୁ ମାତ୍ର ଛଅବର୍ଷ, ବାଲେଶ୍ୱର କଲେକ୍‌ଟରଏକ୍ସରେ ଅଫିସ ସୁପରିନ୍‌ଟେଣ୍ଡେଟ୍ ଥିବା ପିତା ଲକ୍ଷ୍ମୀନାରାୟଣ ଦାସଙ୍କୁ ଇଂରେଜ ସରକାର ଚାକିରୀରୁ ବହିଷ୍କାର କରିଥିଲେ ।

ଏହାପରେ ଲକ୍ଷ୍ମୀନାରାୟଣ ପୁଅଝିଅଙ୍କୁ ସଂଗରେ ଧରି ପୁରୀଗଲେ ଓ ସେଠାରେ ବାଳମୁକୁନ୍ଦ କାନୁନ୍‌ଗୋଙ୍କ ସାହାଯ୍ୟରେ ଜଗନ୍ନାଥ ମନ୍ଦିରର ସହକାରୀ ମେନେଜର ଚାକିରୀ ପାଇଲେ । ସେଠାରେ ରବୀନ୍ଦ୍ରମୋହନ ଷଷ୍ଠ ଓ ସପ୍ତମ ଶ୍ରେଣୀ ଯାଏ ଅଧ୍ୟୟନ କଲେ । ଏଠାକାର ସ୍କୁଲ ଜୀବନ ରବୀନ୍ଦ୍ରମୋହନଙ୍କ ପାଇଁ ସଂଗ୍ରାମର ପ୍ରସ୍ତୁତି ପର୍ବ ଥିଲା । କୌଣସି କାରଣବଶତଃ ସେଠାରେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କୁ ଚାକିରୀ ହରାଇବାକୁ ପଡିଥିଲା । ତା'ପରେ ସେ ଏଡତାଳର ଜମିଦାର ଭାସ୍କର

ମହାପାତ୍ରଙ୍କର ଜମିଦାରୀରେ ଜମିଦାରୀର ଭଲମନ୍ଦ ବୁଝିବା ପାଇଁ ମେନେଜର ଚାକିରୀରେ ଅବସ୍ଥାପିତ ହେଲେ । ଅଳ୍ପ କେତେମାସପରେ ରବୀନ୍ଦମୋହନଙ୍କୁ ବାଲେଶ୍ୱର ଫେରି ଆସିବାକୁ ପଡିଲା ଓ ତା'ପରେ ସେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । ସେତେବେଳେ ଏକ ନୂତନ ଚେତନାର ଉଦ୍ରେକ ତାଙ୍କୁ ବିବ୍ରତ କଲା । ସାଙ୍ଗସାଥିମାନଙ୍କୁ ସ୍ୱଦେଶୀ ଆନ୍ଦୋଳନ ଓ ସତ୍ୟାଗ୍ରହ ବିଷୟରେ ଧାରଣା ଦେଇ ସେ ଇଂରେଜ ସରକାରଙ୍କ ବିଷଦୃଷ୍ଟରେ ପଡିଲେ । ଲବଣ ସତ୍ୟାଗ୍ରହ ସମଗ୍ର ଭାରତରେ ଅଭୂତପୂର୍ବ ଜନଜାଗରଣ ସୃଷ୍ଟ କଲାବେଳେ ରବୀନ୍ଦ୍ର ମୋହନଙ୍କ ପରି କେତେ ଜଣ ଛାତ୍ ବାଲେଶ୍ୱରର ନେତୃତ୍ ନେଇଥିଲେ । ଜିଲ୍ଲା ପଶାସନ ଏଥିପାଇଁ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ଯେଉଁ ଗୁପ୍ତ ରିପୋର୍ଟ ପ୍ରଦାନ କରିଥିଲେ, ତାହାର ଫଳ ସ୍ୱରୂପ ତାଙ୍କୁ ସ୍କୁଲରୁ ବିଦା ହେବାକୁ ପଡିଲା । ବସ୍ତୁତଃ ଏହିଠାରୁ ହିଁ ତାଙ୍କ ଆନୁଷ୍ଠାନିକ ଶିକ୍ଷାର ପୂର୍ଣ୍ଣଛେଦ ପଡିଲା ।

ଲୁଣମରା ଆନ୍ଦୋଳନହିଁ ରବିନ୍ଦ୍ରମୋହନଙ୍କ ସତ୍ୟାଗ୍ରହୀ ଜୀବନର ଅୟମାରମ୍ଭ । ରବୀନ୍ଦ୍ରମୋହନ କଂଗ୍ରେସ ମୁଖ୍ୟନେତାମାନଙ୍କ ଅନୁରୋଧକ୍ରମେ ପାଞ୍ଚ ଛଅ ଜଣଙ୍କୁ ସଂଗରେ ଧରି ଖରାସାହାପୁର ଗଲେ ଓ ସେଠାରେ ଯଥାରୀତି ଲୁଣମରା କାର୍ଯ୍ୟ କରି ପ୍ରଶଂସିତ ହୋଇଥିଲେ । ଲୁଣମାରି ବାଲେଶ୍ୱର ଫେରୁଥିବାବେଳେ, ସିନ୍ଦୂରିଗ୍ରାମ ନିକଟରେ ତାଙ୍କୁ ପୋଲିସ ଅଟକାଇ ଲୁଣ ଅଛି କି ନାହିଁ ଦେଖିଲେ । ମାତ୍ର ଚତୁର ରବିନ୍ଦ୍ରମୋହନ ଏଭଳି ସ୍ଥାନରେ ଲୁଣଲୁଚାଇ ରଖିଥିଲେ ଯେ ତାହା ପୋଲିସର ଦୃଷ୍ଟିପଥକୁ ଆସିପାରିନଥିଲା । ସେଥିପାଇଁ ତାଙ୍କୁ ଆଉ ଗିରଫ କରାଯାଇ ପାରିଲା ନାହିଁ ।

ବର୍ଷାଦିନ ଆସିବାରୁ ଲୁଣମରା କାର୍ଯ୍ୟ ଆପାତତଃ ବନ୍ଦ ରହିଲା । ତାପରେ ଚୋକିଦାରୀ ଟିକସ ଆଦୟ ବିରୁଦ୍ଧରେ ସତ୍ୟାଗ୍ରହ ଆରମ୍ଭ ହେଲା । ଶ୍ରୀଜଙ୍ଗ ଓ ଗୋପୀନାଥପୁର ଏହି ଦୁଇଟି ସର୍କଲରୁ ଆଦାୟ କରାଯାଉଥିବା ଚଉକିଦାରୀ ଟିକସ୍ ବିରୁଦ୍ଧରେ ସେ ନେତୃତ୍ୱ ନେଇଥିଲେ । ଯେତେବେଳେ 'ଗାନ୍ଧୀ-ଇରଉଇନ' ଚୁକ୍ତି ସଂପାଦିତ ହେଲା । ସେତେବେଳେ ଅନ୍ୟ ସତ୍ୟାଗ୍ରହୀମାନଙ୍କ ସହିତ ରବିନ୍ଦ୍ରମୋହନଙ୍କୁ ମଧ୍ୟ କାରାଗାରାରୁ ମୁକ୍ତ କରାଗଲା । ଲୁଣମରା ଆନ୍ଦୋଳନ ତୁଳନାରେ ଚଉକିଦାରୀ ଟିକ୍ସ ଆଦାୟର ବିରୁଦ୍ଧାଚରଣରେ ସେ ଅଧିକ ଲୋକପ୍ରିୟ ହୋଇଥିଲେ । ତୁଳାଭିଣା, ସୂତାକଟା ଇତ୍ୟାଦି ଗ୍ରାମାଞ୍ଚଳର ଲୋକମାନଙ୍କୁ ଶିଖାଇବା ସଂଗେ ସଂଗେ ସେ ଲୁଚି ଲୁଚି ସତ୍ୟାଗ୍ରହର ବାର୍ତ୍ତା ପ୍ରଚାର କରୁଥିଲେ । ପୋଲିସ୍ ଜୁଲମ୍ ବିରୁଦ୍ଧରେ ରବୀନ୍ଦ୍ର

ମୋହନଙ୍କ ସ୍ୱରଥିଲା ଅତି ତୀବ୍ର । ସେଥିପାଇଁ କେତେଥର ତାଙ୍କୁ ମାଡ ଖାଇବାକୁ ପଡିଛି । ବିପ୍ଳବ ପାଇଁ ଆଗଭର ହେବା ଏକ ବିଚିତ୍ର ମାନସିକତାକୁ ନେଇ ରବୀନ୍ଦ୍ରମୋହନଙ୍କ ଚରିତ୍ର କ୍ରମେ ଗଢ଼ି ଉଠିଥିଲା । ଏକଦା ଗୌରାଙ୍ଗ ଚରଣ ଦାସ, ରଘୁନାଥ ଦାସ, ସୁଦର୍ଶନ ପ୍ରହରାଜ, ବିନୋଦ ଚୌଧୁରୀ, ମାଳତୀ ଦେବୀ, ରମାଦେବୀ ଓ କିରଣବାଳା ସେନ ପ୍ରଭୃତି ନେତା ଓ ନେତ୍ରୀମାନେ ଯାହା କହୁଥିଲେ, ତାହା ରବୀନ୍ଦ୍ରମୋହନଙ୍କ ପାଇଁ ଥିଲା ବେଦର ଗାର । ଫରାସୀ ଡିଙ୍ଗାରେ ଯେତେବେଳେ କଂଗ୍ରେସ ଅଫିସ୍‌ର କାର୍ଯ୍ୟ ଚାଲିଲା, ସେତେବେଳେ ଗଜେନ୍ଦ୍ର ସାହୁ ଓ ରବୀନ୍ଦମୋହ ଏଇ ଦୁଇଜଣ ବସି ବୁଲେଟିନ୍ ଲେଖନ୍ତି । ସେଥିପାଇଁ ଆଇରିସ୍ ପୋଲିସ ତାଙ୍କୁ ରିଙ୍ଗଲିଡର ବୋଲି କହୁଥିଲା । କେବଳ ରବିବାବୁ ନୁହନ୍ତି, ତାଙ୍କ ପରିବାରର ଅନ୍ୟମାନେ ମଧ୍ୟ ସତ୍ୟାଗ୍ରହ ପ୍ରତି ଆକୃଷ୍ଟ ହୋଇପଡିଥିଲେ । ତାଙ୍କର ଦାଦା ଝିଅ ଭଉଣୀ ପଦ୍ମାବତୀ ଦେବୀ ମଦଦୋକାନ ଆଗରେ ପିକେଟିଂ କରି ତିନିମାସ ଜେଲ୍ ମଧ୍ୟ ଯାଇଥିଲେ । ସରକାରା ଜାଣିପାରିଲେ ଯେ, ଯଦି ରବୀନ୍ଦ୍ରମୋହନଙ୍କୁ ଚୁପ୍ କରିଦିଆଯାଏ, ତେବେ କେତେକାଂଶରେ ଯୁବସମାଜକୁ ନେଇ କ୍ରମେ ଗଢ଼ି ଉଠୁଥିବା ସତ୍ୟାଗ୍ରହ କ୍ରମେ ମଉଳି ପଡିବ, ମାତ୍ର ହେଲା ବିପରୀତ । ସତ୍ୟାଗ୍ରହ ମଉଳିବା ପରିବର୍ତ୍ତେ ଅଧିକରୁ ଅଧିକ ତୀବ୍ର ହେଲା । ମଦଦୋକାନ ଆଗରେ ପିକେଟିଂ କରିବାଠୁ ଆରମ୍ଭ କରି ବିଦେଶୀ ଲୁଗା ପୋଡିବା ପର୍ଯ୍ୟନ୍ତ ଯେତେସବୁ କାମ କରାଗଲା, ସେସବୁ ପଛରେ ରବୀନ୍ଦ୍ରମୋହନଙ୍କ ପ୍ରତ୍ୟକ୍ଷ ସହଯୋଗ ଥିଲା । ୧୯୩୨ ଜାନୁୟାରୀ ୨୬ ତାରିଖରେ କଂଗ୍ରେସକୁ ବେଆଇନ କରାଗଲା ଓ କଂଗ୍ରେସ ସଂଗଠନର ନେତୃତ୍ୱନେବା ହେତୁ ରବୀନ୍ଦ୍ରମୋହନଙ୍କୁ ଗିରଫ କରାଯାଇ ପାଟଣାର କ୍ୟାମ୍ପ ଜେଲକୁ ପଠାଗଲା । ୧୯୩୨ ମସିହାରେ ତାଙ୍କୁ ଦୁଇଥର ଜେଲ୍ ଯିବାକୁ ପଡିଥିଲା । ଥରେ ଦୁଇମାସ ପାଇଁ ଓ ଆଉଥରେ ଛଅମାସ ପାଇଁ । ଇତିମଧ୍ୟରେ ଡଃ ହରେକୃଷ୍ଣ ମହତାବ ଅଗରପଡା ଠାରେ 'କର୍ମମନ୍ଦିର' ପ୍ରତିଷ୍ଠା କରିଥିଲେ ଓ ତାହାରି ଜରିଆରେ ସେ ଚାହୁଁଥିଲେ ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟକଳାପ ବିକାଶ ଘଟୁ । ସେ କହୁଥିଲେ ପ୍ରତ୍ୟେକ ସ୍ଥାନରେ ଅନ୍ତତଃ କଂଗ୍ରେସ୍ ସଂଗଠନକୁ ବଳିଷ୍ଠ କରିବାପାଇଁ ଜଣେ B.A ପାଶ୍ କରିଥିବା କର୍ମୀରହୁ । ରବୀନ୍ଦ୍ରମୋହନ ଜେଲ୍ ଯାଇଥିବାରୁ ଓ ସ୍କୁଲରୁ ତାଙ୍କୁ ବହିଷ୍କାର କରାଯାଇଥିବାରୁ ଓଡିଶାର ଅନ୍ୟ କେଉଁଠି ପଢ଼ିବାର ସଂଭାବନା ନଥିଲା । ଶେଷରେ ମହତାବ ଓ ରବିବାବୁଙ୍କ ଭଗ୍ନୀପତି ସଚ୍ଚିଦାନନ୍ଦ ଦାସ କଲିକତା ଯାଇ ରବୀନ୍ଦ୍ରମୋହନଙ୍କୁ ଉଚ୍ଚଶିକ୍ଷା ଲାଭପାଇଁ ପାରାମର୍ଶ ଦେଇଥିଲେ ଓ ଏଥିପାଇଁ

ଅର୍ଥର ମଧ୍ୟ ବ୍ୟବସ୍ଥା ହୋଇଥିଲା । ଯଦିଓ ମହତାବବାବୁ ଓ ଭିଣୋଇଙ୍କ ଭୟରେ ସେ କଲିକତା ଗଲେ । ସେଠାରେ ପଢ଼ିବା ବଦଳରେ ଲୁଗାକଳ ଶ୍ରମିକମାନଙ୍କ ନେତୃତ୍ୱ ନେଲେ । ଦେବେନ୍ ସେନଙ୍କର ଶ୍ରମିକ ସଂଗଠନର ନାମ ଥାଏ 'ବେଙ୍ଗଲ୍ ଲେବର ଏସୋସିଏସନ୍' ଓ ଏହାର ସଭାପତି ଥାନ୍ତି ଡଃ ସୁରେଶ ଚନ୍ଦ୍ର ବାନାର୍ଜୀ । ଡଃ ବାନାର୍ଜୀ ସେଠାରେ ରବିବାବୁଙ୍କୁ ଶ୍ରମିକ ସଂଗଠନକୁ ଜୋରଦାର କରିବା ପାଇଁ ପରାମର୍ଶ ଦେଇଥିଲେ । ଏହିଠାରେ ହିଁ ସେ ପ୍ରଥମକରି ମହାତ୍ମାଗାନ୍ଧୀଙ୍କୁ ସାକ୍ଷାତ୍ କରିଥିଲେ । ସେଠାରେ 'Gun-Shell' ଫେକ୍ଟରୀ, ବଡବଜାରରେ ଓଡିଆ କୁଲିମାନଙ୍କ ସଂଗଠନ, ମଇଁଷୀ ଗାଡି ଚାଳକମାନଙ୍କ ସଙ୍ଗଠନ, 'Jute-Press workers Union' 'କଲିକତା ଇଲେକ୍ଟ୍ରୀ ସପ୍ଲାଇ ଇଉନିଅନ୍' ଇତ୍ୟାଦି ସଂଙ୍ଗଠନର ଦାୟିତ୍ୱନେଇ ଶ୍ରମିକ ବିରୋଧି କାର୍ଯ୍ୟକଳାପର ସେ ଦାୟିତ୍ୱ ନେଇଥିଲେ । କଲିକତାର ଆଖପାଖ ଅଞ୍ଚଳର ଏପରିକି ଢ଼ାକାନିକଟବର୍ତ୍ତୀ ନାରାୟଣଙ୍ଗ, ଯେଶୋର ଇତ୍ୟାଦି ଅଞ୍ଚର ବିଭିନ୍ନ କାରାଖାନର ଶ୍ରମିକମାନେ ୧୭୦- ହ୍ୟାରିସନ୍ ରୋଡରେ ଅବସ୍ଥିତ ଲେବର ଏସୋସିଏସନ୍ ଅଫିସକୁ ଆସୁଥିଲେ । କଲିକତାରେ ଅବସ୍ଥାନ କାଳରେ ରବୀନ୍ଦ୍ରମୋହନ ଅପୂର୍ବ ନିଷ୍ଠା, ଦକ୍ଷତା, ସାଂଗଠନିକ କ୍ଷମତାର ପରିଚୟ ଦେଇଅଛନ୍ତି । ସେଠାରେ ସେ ବିଦ୍ରୋହୀଭାବରେ ପରିଚିତ ହୋଇ ଅଲିପୁର କାରାଗାରରେ ଦୁଇମାସ ଜେଲଦଣ୍ଡ ଭୋଗ କରିଥିଲେ । ପାର୍କ-ସର୍କସଠାରେ କଲିକତା ପେଣ୍ଟସ୍ ଏଣ୍ଡ ଭାନିସ୍ । କାରଖାନାର ଦାବୀପତ୍ରକୁ ନେଇ କିଛିଦିନ ଆନ୍ଦୋଳନ ଚାଲିବାପରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ତାଙ୍କର ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ଏପରିକି ନିମ୍‌ତଲା ଶ୍ମଶାନ ଘାଟର ଶବ ସଂସ୍କାର ପାଇଁ ଯେଉଁମାନେ କାଠଚିରାଳୀ ଥିଲେ ସେମାନଙ୍କ ପାଇଁ ମଧ୍ୟ ସେ ସଙ୍ଗଠନର ଦାୟିତ୍ୱ ବହନ କରିଥିଲେ ।

୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ସେହି ସମୟବେଳକୁ କଲିକତାର ହରତାଳ ଚରମସୀମାରେ ପହଞ୍ଚିଥିଲା । ଏତିକିବେଳେ ଇଂରେଜ ସରକାରଙ୍କ ସର୍ବୋଚ୍ଚ ପୋଲିସ ଅଫିସର ରବିବାବୁଙ୍କୁ ସତର୍କ କରିକହିଲେଯେ ତାଙ୍କୁ ସଂଗେ ସଂଗେ କଲିକତା, ହାୱାଡା, ହୁଗୁଲି ଓ ଚବିଶପ୍ରଗଣା ଅଞ୍ଚଳରୁ ବାହାରକୁ ଯିବାକୁ ହେବ । ଅନ୍ୟ କୌଣସି ଉପାୟ ନ ଦେଖି ରବିବାବୁ ବାଧ୍ୟହୋଇ ବାଲେଶ୍ୱର ଫେରିଆସିଲେ । ଏହିଠାରୁ ହିଁ ତାଙ୍କର କଲିକତାର ଶ୍ରମିକ ସଙ୍ଗଠନର ନେତୃତ୍ୱ ନେବାର ଶେଷ ହେଲା ।

କଲିକତାପରେ ବାଲେଶ୍ୱରରେ ସେ କଂଗ୍ରେସ ସଙ୍ଗଠନର ନେତୃତ୍ୱ ନେଲେ । ସେତେବେଳେ ସମଗ୍ର ବାଲେଶ୍ୱର ଜିଲ୍ଲାକୁ ୪ ଗୋଟି ଜୋନ୍‌ରେ ବିଭକ୍ତ କରାଯାଇଥିଲା । ଚାନ୍ଦବାଲି, ତିହିଡି, ବନ୍ତ, ଭଣ୍ଡାରୀପୋଖରୀ ଓ ଧାମନଗର ଇତ୍ୟାଦି ବିସ୍ତୃତ ଅଞ୍ଚଳ ତାଙ୍କ ନେତୃତ୍ୱରେ ପରିଚାଳିତ ହେଲା । ଏତିକିବେଳେ ମହାତ୍ମାଗାନ୍ଧୀଙ୍କ ପ୍ରିୟଶିଷ୍ୟା ମୀରାବେନ୍ ଓଡିଶା ଆସିଲେ । ରବିବାବୁ ମୀରାବେନ୍‌ଙ୍କ ଗସ୍ତପାଇଁ ସମସ୍ତ ବ୍ୟବସ୍ଥା କଲେ । ଶହୀଦନଗରଠାରେ ମୀରାବେନ୍ ରାତ୍ରି ଯାପନ କରିଥିଲେ ଓ ଗସ୍ତର ଆରଂଭରୁ ଶେଷ ପର୍ଯ୍ୟନ୍ତ ସତ୍ୟାଗ୍ରହୀଙ୍କୁ ଏକଯୁଟ କରିବାର ଦାୟିତ୍ୱ ରବିବାବୁଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସତ୍ୟାଗ୍ରହୀମାନେ ଗାନ୍ଧିଜୀଙ୍କ ପ୍ରେରଣାରେ ତିନୋଟି କଥା ମନେ ରଖିଥିଲେ । ପ୍ରଥମଟି ହେଲା ଆମ ଇଚ୍ଛା ବିରୁଦ୍ଧରେ ବ୍ରିଟିଶ ଆମକୁ ଯୁଦ୍ଧରେ ଯୋଡି ଦେଇଛି । ଦ୍ୱିତୀୟଟି ହେଲା ଆପଣମାନେ ଏ ଯୁଦ୍ଧରେ ସରକାରଙ୍କୁ ସାହାଯ୍ୟ କରନ୍ତୁ ନାହିଁ । ତୃତୀୟଟି ହେଲା ଏ ଯୁଦ୍ଧରେ ସାହାଯ୍ୟ କରିବା ହେଉଛି ନୈତିକ ଅପରାଧ ବା ପାପ । କେଉଁମାନେ ସତ୍ୟାଗ୍ରହ କରି ଜେଲଯିବେ, ଓ କିପରି ଯିବେ ସେହି ଦାୟିତ୍ୱରେ ରବୀନ୍ଦ୍ରମୋହନ ରହିଥିଲେ । ତାଙ୍କ ନେତୃତ୍ୱରେ ବାଲେଶ୍ୱର ଜିଲ୍ଲାରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆଶାତୀତ ସଫଳତା ଲାଭ କରିପାରିଥିଲା । ସତ୍ୟାଗ୍ରହୀମାନେ ଭଣ୍ଡାରୀପୋଖରୀ ଥାନାକୁ ପୋଡିଦେବା ପଛରେ ରବିବାବୁଙ୍କ ନେତୃତ୍ୱଥିଲା । ଏଥିପାଇଁ ତାଙ୍କୁ- ୧୯୪୨ ମସିହା ଅଗଷ୍ଟ ୯ ତାରିଖରେ ଗିରଫ କରାଗଲା । ବିନାବିଚାରରେ ରବିନ୍ଦ୍ରମୋହନଙ୍କୁ ଦୁଇବର୍ଷ ଏଗାରମାସ ଅଟକବନ୍ଦୀଭାବରେ ରଖାଗଲା । ସେତେବେଳେ ରବିବାବୁ ବ୍ରହ୍ମପୁର ଜେଲରେ ଥିଲେ । କୋରାପୁଟରୁ ଆସିଥିବା ଅନ୍ୟତମ ବିପ୍ଳବୀନେତା ଲକ୍ଷ୍ମଣ ନାଏକ ବ୍ରହ୍ମପୁର ଜେଲରେ ଥିଲେ । ତାଙ୍କୁ ଫାଶୀଦଣ୍ଡ ହୁକୁମ ହୋଇଥିଲା । ରବୀନ୍ଦ୍ରମୋହନଙ୍କ ସମେତ କେତେଜଣ ବିପ୍ଳବୀ ଜେଲର ସେଲ୍ ଭାଙ୍ଗୀ ଲକ୍ଷ୍ମଣ ନାଏକଙ୍କୁ ମୁକ୍ତ କରିବାର ଉଦ୍ୟମ କରି ବିଫଳ ହୋଇଥିଲେ । ଏହି ସମୟର ଯେଉଁ ହୃଦୟ ବିଦାରକ ଦୁଃଖ ତା'ର ସ୍ମୃତିଚାରଣ କରି ରବୀନ୍ଦ୍ରମୋହନ ଏକ ପ୍ରକାର ମୂକ ପାଲଟି ଯାଉଥିଲେ । ଏଭଳି ଏକ ଅମାନୁଷିକ ଘଟଣାର ପ୍ରତିବାଦରେ ସେଦିନ ବନ୍ଦୀଥିବା ସତ୍ୟାଗ୍ରହୀମାନେ ଅନଶନ କରିଥିଲେ । ୧୯୪୫ ମସିହାରେ ରବୀନ୍ଦ୍ରମୋହନ ଜେଲରୁ ଖଲାସ ହେଲେ । ସଙ୍ଗଠନ ଶକ୍ତିର ପରିଚୟ ସେ ବହୁବାର ପ୍ରମାଣିତ କରିଥିବା ହେତୁ ସେ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଭାବେ ନିର୍ବାଚିତ ହୋଇଥିଲେ । ଏହି ସମୟର ଅନ୍ୟ ଯେଉଁ ଘଟଣା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା, ତାହା ହେଉଛି ଜିଲ୍ଲା ବୋର୍ଡ ନିର୍ବାଚନ ଓ ବିଧାନ ସଭା ନିର୍ବାଚନ । ସବୁଠୁ ମଜାର କଥା ହେଲା ଯେ ନିର୍ବାଚନରେ ବାଲେଶ୍ୱରର ସମସ୍ତ କଂଗ୍ରେସ ପ୍ରାର୍ଥୀ ବିନା ପ୍ରତିଦ୍ୱନ୍ଦିତାରେ ନିର୍ବାଚିତ ହୋଇଥିଲେ ।

ପ୍ରଥମରୁ ରବୀନ୍ଦ୍ରମୋହନ ଥିଲେ ସ୍ୱାଧୀନଚେତା । ପିତାମାତା ଧର୍ମ ବିଶ୍ୱାସୀ ଥିଲେ ମଧ୍ୟ ଧର୍ମକଥା ପଡିଲେ ସେ ପ୍ରତିକ୍ରିୟାଶୀଳ ହୋଇଉଠନ୍ତି । ବିବାହ କରିବା ବିଷୟ ସେ କେବେ ଚିନ୍ତା କରିନଥିଲେ । ଶେଷରେ ୧୯୪୫ ମସିହା ଡିସେମ୍ବର ୧୩ ତାରିଖରେ ଗୋଦାବରୀ ଦେବୀଙ୍କୁ ବିବାହ କଲେ । ଏହି ବିବାହ ହେଉଛି ମଣିକାଞ୍ଚନର ଅପୂର୍ବ ସଂଯୋଗ । ବିବାହବେଳକୁ ରବୀନ୍ଦ୍ରମୋହନଙ୍କୁ ୩୩ ବର୍ଷ ଓ ଗୋଦାବରୀ ଦେବୀଙ୍କୁ ୨୯ ବର୍ଷ ହୋଇଥିଲା । ନିଜେ ଗୋଦାବରୀଦେବୀ କେବଳ ହରିଜନ ବସ୍ତିରେ ନୁହେ, ସବର୍ଣ୍ଣ ବସ୍ତିରେ ରହି ସେମାନଙ୍କ ମଧ୍ୟରେ ଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର କରିବାପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ମହାତ୍ମାଗାନ୍ଧୀଙ୍କର ଓଡିଶା ଅବସ୍ଥାନ କାଳରେ ଗୋଦାବରୀ ଦେବୀ ଥିଲେ ତାଙ୍କ ଶିକ୍ଷୟିତ୍ରୀ । ତେଣୁ ଗାନ୍ଧିଜୀ ତାଙ୍କୁ ଗୁରୁମା ବୋଲି ସମ୍ବୋଧନ କରୁଥିଲେ । ତାଙ୍କ ବିବାହର ପରଦିନ ଏକ ସଭାର ଆୟୋଜନ କରାଯାଇଥିଲା ଓ ଏହି ବିବାହ ଉତ୍ସବରେ ବହୁ ଗାନ୍ଧୀବାଦୀ ନେତା ଯୋଗଦାନ କରିଥିଲେ ।

ରବୀନ୍ଦ୍ରମୋହନଙ୍କ ଦାମ୍ପତ୍ୟଜୀବନଥିଲା ଅତ୍ୟନ୍ତ ମଧୁମୟ । ଦୁଇଟି କନ୍ୟାର ସେ ହେଉଛନ୍ତି ଜନକ । ରବୀନ୍ଦ୍ରମୋହନଙ୍କ ସଂଗ୍ରାମୀ ଜୀବନରେ ଗୋଦାବରୀ ଥିଲେ ସହକର୍ମୀଣୀ ଓ ସହଧର୍ମିଣୀଙ୍କୁ ପାଇ ରବୀନ୍ଦ୍ରମୋହନଙ୍କ ପାରିବାରିକ ଜୀବନଥିଲା ଶାନ୍ତ ଓ ସମାହିତ । ମାତ୍ର ତାଙ୍କ କନିଷ୍ଠା କନ୍ୟାର ଅକାଳ ବିୟୋଗ ତାଙ୍କ ପାଇଁ ଏକ ଶକ୍ତ ଧକ୍କା । ୧୯୯୩ ମସିହା ଜୁନ୍ ୩୦ ତାରିଖ ଗୋଦାବରୀ ଦେବୀଙ୍କର କର୍କଟ ରୋଗରେ ଦେହାନ୍ତ ହେଲା । ପରାଧୀନ ଭାରତରେ ସଂଗ୍ରାମକରି ନିଜକୁ ପ୍ରତିଷ୍ଠିତ କରି ପାରିଥିବା ଜଣେ ସଚ୍ଚା ଦେଶ ସେବିକାଙ୍କ ବିଚ୍ଛେଦ ଯନ୍ତ୍ରଣା, ସଂଗ୍ରାମୀ ରବୀନ୍ଦ୍ରମୋହନଙ୍କ ବାର୍ଦ୍ଧକ୍ୟକୁ କବଳିତ କରିବାପାଇଁ ଚେଷ୍ଟା କରିମଧ୍ୟ କରିପାରିନଥିଲା । ୧୯୪୬ ପରେ ଯେତେବେଳେ ସବୁ ଅଟକବନ୍ଦୀମାନଙ୍କୁ ସ୍ୱତନ୍ତ୍ର ନିର୍ଦ୍ଦେଶ ବଳରେ ଖଲାସ କରିଦିଆଗଲା, ତା'ପରେ ରବିବାବୁ ସଙ୍ଗଠନ କାର୍ଯ୍ୟରେ ଲାଗି ପଡିଲେ । ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା । କଂଗ୍ରେସ ସଙ୍ଗଠନରୁ ଏହାକୁ ଏକ ମାତ୍ର ଅନୁଷ୍ଠାନ ଭାବି ସେ ତାଙ୍କର ସଫଳ ଉଦ୍ୟମ ଆରଂଭ କରିଥିଲେ । ମହାତ୍ମାଗାନ୍ଧୀ ହୋଇଥିଲେ ତାଙ୍କ ଆଦର୍ଶ । ମହାତ୍ମାଙ୍କ ଏକାଦଶବ୍ରତକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିବାପାଇଁ ଉଦ୍ୟମ କରିଛନ୍ତି । ଜୀବନର ଅପରାହ୍ଣରେ ମଧ୍ୟ ଗାନ୍ଧିଜୀଙ୍କର ଆଦର୍ଶ ତାଙ୍କର ଜୀବନଚର୍ଯ୍ୟା କୁ ନାନାଭାବେ ନିୟନ୍ତ୍ରଣ କରିଛି । ରବିବାବୁ ପ୍ରଥମେ କଂଗ୍ରେସ ଓ ପରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସଭ୍ୟ ଥିଲେ । ସର୍ବଶେଷରେ ୧୯୪୮ ମସିହାରେ ସମାଜବାଦୀ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ସେ ସୋସାଲିଷ୍ଟ ପାର୍ଟିରେ ସଭ୍ୟ ହୋଇଥିଲେ ।

ରବିନ୍ଦ୍ରମୋହନଙ୍କ ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା କଂଗ୍ରେସ ସଂଗଠନରୁ । ପରେ ସେ ସୋସେଲିଷ୍ଟ ଦଳର ହେଲେ ଜଣେ ସକ୍ରିୟ ସଦସ୍ୟ । ଭୋଗ-ସର୍ବସ୍ୱ ରାଜନୀତିରେ ତାଙ୍କର ବିଶ୍ୱା ନଥିଲା । ନୀତି ଓ ଆଦର୍ଶକୁ ନେଇ ତାଙ୍କ ରାଜନୀତି ପର୍ଯ୍ୟବସିତ । ତା ହୋଇନଥିଲେ ଦୁଇ ଦୁଇ ଥର ବିଧାନ ସଭାର ସଦସ୍ୟ, ପୁଣି ସୋସେଲିଷ୍ଟ ଦଳର ଦଳପତି ଥାଇ ମଧ୍ୟ ସେ ନିଜ ପାଇଁ କିଛି କରି ପାରି ନାହାନ୍ତି । ଗୋପାଳ ଗାଁରେ ଥିବା ଚାଳଘରକୁ ଦେଖିଲେ ତାଙ୍କ ତ୍ୟାଗ-ସର୍ବସ୍ୱ ରାଜନୀତିର ପ୍ରମାଣ ସହଜରେ ମିଳି ପାରିବ । ବିଧାନ ସଭାର ସଦସ୍ୟ ଥାଇ ଯେତିକି ଭତ୍ତା ପାଉଥିଲେ ତାହା ମଧ୍ୟ ଜନସେବା ଓ ଦଳ ପାଇଁ ଖର୍ଚ୍ଚ ହେଉଥିଲା । ଆଜି ମଧ୍ୟ ତାଙ୍କ ବସାଘରେ ବହୁ ଅନାଥ, ଦରିଦ୍ର ସର୍ବହରା ଆଶ୍ରୟ ନେଇ ଜୀବନ ନିର୍ବାହ କରୁଛନ୍ତି । ''ଏମାନେ କିଏ'' ବୋଲି ପଚାରିଲେ କେବଳ ସରଳ ଉତ୍ତରଟିଏ ମିଳିଥାଏ । ''ସେମାନେ ମୋର କେହି ନୁହନ୍ତି, ଅଥଚ ସେମାନେ ମୋର ସବୁ କିଛି ।'' ଦିନେ ସମାଜବାଦୀ ଆନ୍ଦୋଳନକୁ ଓଡିଶାରେ ବାସ୍ତବ ରୂପ ଦେବାକୁ ଯାଇ ଯେଉଁ ଲୋକ ଘର ସଂସାର ଅର୍ଥ ସବୁ କିଛି ଭୁଲିଥିଲା, ସେହି ଲୋକ ଯେ ଦାନବୀର ଓ କର୍ମୀ ହୋଇପାରେ ତା'ର ପ୍ରତ୍ୟକ୍ଷ ପ୍ରମାଣ ନିଜେ ରବୀନ୍ଦ୍ରମୋହନ ଦାସ । ସକାଳଠାରୁ ରାତି ପର୍ଯ୍ୟନ୍ତ କେତେ ଲୋକ ଆସନ୍ତି, ଯାଆନ୍ତି, ଦୁଃଖ ଜଣାନ୍ତି । ହୁଏତ କ୍ଷମତାରେ ଥିବା ଜଣେ ବିଧାୟକଙ୍କ ପାଖକୁ ବି ଏତେ ଲୋକ ଯାଉ ନଥିବେ । ପାଇବାର କିଛି ନାହିଁ ବୋଲି ଜାଣି ମଧ୍ୟ କାହିଁକି ଯେ ସେଇ ଚାଳଘରେ ଏତେ ଲୋକଙ୍କର ଭିଡ ଜଣେ ତାହା ବୁଝି ହୁଏନା । ପୁଣି ବୁଝି ହୁଏନା କେଉଁ କାଉଁରୀ ଶକ୍ତି ବଳରେ ସେ ଲୋକମାନଙ୍କୁ ତାଙ୍କ ପାଖକୁ ଟାଣି ଆଣନ୍ତି । ଜଣେ ଉଦାର ହୃଦୟ, ଅନୁଭବୀ, ବନ୍ଧୁବତ୍ସଳ ବ୍ୟକ୍ତି ନହେଲେ କିଏ ଅବା କାହିଁକି ତାଙ୍କ ପାଖକୁ ଆସନ୍ତା । ମନ ଚିହ୍ନା ସେଇ ଲୋକଟି ଅର୍ଥ ପାଇଁ ଯେ ରାଜନୀତି କରୁ ନଥିଲା ତାହାର ରାଶି ରାଶି ଉଦାହରଣ ଖୋଜିଲେ ମିଳି ପାରିବ । ଆଜିର ରାଜନୀତିଜ୍ଞ ମାନଙ୍କ ଭଳି ପଙ୍କ କାଦୁଅରେ ଜୁତୁ ଜୁତୁ ହୋଇ ସେ ସେବାର ଛଳନା କରୁ ନଥିଲେ । ସେବା ହିଁ ତାଙ୍କ ରାଜନୀତିର ମୂଳ ସୂତ୍ର ।

ରବୀନ୍ଦ୍ର ମୋହନ ପ୍ରଜା ସୋସିଆଲିଷ୍ଟ ପାର୍ଟିର ପାର୍ଥୀଭାବେ ୧୯୫୭ ମସିହାରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ତାଙ୍କ ନିର୍ବାଚନ ମଣ୍ଡଳୀ ଥିଲା ବାଲେଶ୍ୱର । ରାଜନୀତି କ୍ଷେତ୍ରରେ ଏହି ନିର୍ବାଚନ ମଣ୍ଡଳୀ ହେଉଛି ସବୁଠୁଁ ବେଶି ଚେତନଶୀଳ। ନିଜର କାର୍ଯ୍ୟ ଦକ୍ଷତା ଓ ସଙ୍ଗଠନ ଶକ୍ତି ହେତୁ ସେ ପ୍ରଥମଥର ପାଇଁ ବିଧାନସଭାରେ ପ୍ରଜା ସୋସିଆଲିଷ୍ଟ ପାର୍ଟିର ଦଳପତି ହୋଇପାରିଥିଲେ । ପୁଣି

ଦଶବର୍ଷ ପରେ ଅର୍ଥାତ୍ ୧୯୬୭ ମସିହାରେ ରାଜ୍ୟ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ଏଥର ମଧ୍ୟ ରବୀନ୍ଦ୍ର ମୋହନ ତାଙ୍କ ଦଳର ଦଳପତି ହୋଇଥିଲେ । ଜନପ୍ରତିନିଧି ଥାଇ ଏକ୍ତ ମୋଟା ଅଙ୍କର ଭତ୍ତାପାଇବାକୁ ସେ ବିରୋଧ କରିଆସିଛନ୍ତି । ନିଜର ଗୁଜୁରାଣ ପାଇଁ ଅଳ୍ପ କେତେ ଟଙ୍କା ଗ୍ରହଣ କରି ଅବଶିଷ୍ଟ ଅର୍ଥକୁ ଜନସାଧାରଣଙ୍କ କଲ୍ୟାଣ ନିମନ୍ତେ ସେ ବ୍ୟୟ କରୁଥିଲେ । ସେ ଜଣେ ଆଦର୍ଶବାଦୀ ତଥା ବାସ୍ତବବାଦୀ ଜନନେତା । ତାଙ୍କ କଥା ଓ କାର୍ଯ୍ୟରେ କେବେ ଓ କେଉଁଠି ଅମେଳ ନଥିଲା । ଆଦର୍ଶବାଦ ସହିତ ବାସ୍ତବବାଦକୁ ମିଶାଇ ସେ ଏକ ନୂତନ ରାଜନୈତିକ ସମୀକରଣ ଆରମ୍ଭ କରିଥିଲେ । ବିଧାୟକ ଥିବା ସମୟରେ ରବୀନ୍ଦ୍ରମୋହନ ରାଜ୍ୟର ତଥା ତାଙ୍କ ନିର୍ବାଚନ ମଣ୍ଡଳୀ ବାଲେଶ୍ୱରର ବହୁ ଜନ ହିତକର କାର୍ଯ୍ୟ କରିପାରିଥିଲେ । ଲୋକଙ୍କର କିଭଳି ଅର୍ଥନୈତିକ ବିକାଶ ଘଟୁ ଏଥିପ୍ରତି ସେ ସତର୍କ ଦୃଷ୍ଟ ରଖିଥିଲେ । ଏହାର ପ୍ରାଥମିକ ଉଦ୍ୟମ ଭାବେ କେନାଲ ବନ୍ଧରେ ନଡିଆ ଗଛ ଲଗାଇ ସରକାରଙ୍କ ଅର୍ଥନୀତିକୁ ସୁଦୃଢ କରିପାରିଥିଲେ । ରବୀନ୍ଦ୍ର ମୋହନଙ୍କ ଅର୍ଥନୈତିକ ସଂସ୍କାରର ଅନ୍ୟ ଏକ ବଳିଷ୍ଠ ପଦକ୍ଷେପ ହେଉଛି ଖଦି ଓ କୁଟୀର ଶିଳ୍ପର ପ୍ରସାର, ନିଜେ ସୂତାକାଟିବା ସହିତ ଅନ୍ୟମାନଙ୍କୁ ଏ ଦିଗରେ ସେ ପ୍ରଭାବିତ କରୁଥିଲେ । ମହାତ୍ମାଗାନ୍ଧୀଙ୍କ ଭଳି ସେ ଭାରି-ଶିଳ୍ପ ଉପରେ ଗୁରୁତ୍ୱ ନ ଦେଇ କୁଟୀର ଶିଳ୍ପ ଉପରେ ଧ୍ୟାନ ଦିଅନ୍ତି । ତାଙ୍କର ବିଶ୍ୱାସ ଏହା କରିପାରିଲେ ସାଧାରଣ ଲୋକ ଆତ୍ମନିର୍ଭରଶୀଳ ହୋଇ ପାରିବେ । ଏହା ପରବର୍ତ୍ତୀକାଳରେ ତାଙ୍କର ସନ୍ତାନସନ୍ତତିମାନଙ୍କୁ ଚାକିରୀ ତଥା ପରସୁଖାପେକ୍ଷୀ କରିପାରିବ ନାହିଁ ବୋଲି ତାଙ୍କ ର ଧାରଣା । ରବୀନ୍ଦ୍ର ମୋହନଙ୍କ ଅନ୍ୟ ଏକ ପ୍ରଗତିମୂଳକ କାର୍ଯ୍ୟ କ୍ରମର ନମୂନା ହେଲା ପାନୀୟ ଜଳଯୋଗାଣ । ସଂକ୍ରାମକ ବ୍ୟାଧିକବଳିତ ନହୋଇ ଜନସାଧାରଣ ଅନ୍ତତଃ ବିଶୁଦ୍ଧ ପାନୀୟ ଜଳ ବ୍ୟବହାର କରନ୍ତୁ, ଏହା ତାଙ୍କର ଥିଲା ଅନ୍ୟତମ ଅଭିଳାଷ । ରବୀନ୍ଦ୍ର ମୋହନ ଅନ୍ୟଏକ ବିରାଟ ଯୋଜନାକୁ ସଫଳ କରିବାକୁ ଚାହୁଁଥିଲେ । ତାଙ୍କ ବାଲେଶ୍ୱର ନିର୍ବାଚନ ମଣ୍ଡଳୀ ଜଳସେଚନ ସୁଯୋଗରୁ ବଂଚିତ ଥିଲା । ଏଥିପାଇଁ ସାଳନ୍ଦୀ ଜଳସେଚନ ଯୋଜନାକୁ ବାଲେଶ୍ୱର ପର୍ଯ୍ୟନ୍ତ ସଂପ୍ରସାରଣ କରିବା ପାଇଁ ସେ ଯଥାସାଧ୍ୟ ଉଦ୍ୟମ କରିଥିଲେ । ଏଥିପାଇଁ ତାଙ୍କୁ ସରକାରଙ୍କ ତରଫରୁ ବିରୋଧର ସମ୍ମୁଖୀନ ହେବାକୁ ପଡିଥିଲା ତଥାପି ବିଧାନସଭାର ଭିତରେ ଓ ବାହାରେ ତାଙ୍କୁ ଝଡ ସୃଷ୍ଟି କରିବାକୁ ପଡିଥିଲା । ତାଙ୍କ ନିର୍ବାଚନ ଲଢେଇ ଥିଲା ଏକ ଆଦର୍ଶର ଲଢେଇ । ତାଙ୍କ ନିର୍ଦ୍ଦେଶରେ ଦଳକୁ ଦଳ କର୍ମୀ ଗ୍ରାମାଞ୍ଚଳରେ ବୁଲି

ଜନମତ ସଂଗ୍ରହ କରୁଥିଲେ ଓ ଲୋକମାନଙ୍କୁ ସେମାନଙ୍କ ଦାବି ସଂପର୍କରେ ସଚେତନ କରାଉଥିଲେ । ସେତେବେଳର ନିର୍ବାଚନକୁ ଆଜି ହୁଏତ ବିଶ୍ୱାସ କରି ହେଉନାହିଁ । ଆଜି ଯେଉଁଳି ନିର୍ବାଚନ ପ୍ରଚାର କଲାବେଳେ କର୍ମୀମାନେ ବେଶ୍ କିଛି ପାରିଶ୍ରମିକ ନେଉଛନ୍ତି ସେତେବେଳେ ଏଭଳି କୁତ୍ସିତ ପରମ୍ପରା ନଥିଲା । ବିନା ପାରିଶ୍ରମିକରେ କର୍ମୀମାନେ ନିର୍ବାଚନ ପ୍ରଚାର କରୁଥିଲେ । ହାତ ଲେଖା ପ୍ରଚାର ପତ୍ର ବଣ୍ଟା ଯାଉଥିଲା ଓ ସମୁଦାୟ ନିର୍ବାଚନ ଖର୍ଚ୍ଚ ଦଶହଜାରରୁ ପନ୍ଦର ହଜାର ମଧ୍ୟରେ ସିମୀତ ଥିଲା ସେ କ୍ଷମତା ପାଇଁ ଆଦୌ ଲାଳାୟିତ ନ ଥିଲେ । ରାଜନୈତିକ ବ୍ୟକ୍ତିମାନେ ଆଦର୍ଶବାଦୀ ଜୀବନଯାପନରୁ ଓହୋରି ଯାଉଥିବାରୁ ସମାଜର ଅଧପତ ହେଉଛି ବୋଲି ସେ ଅନୁଭବ କରୁଥିଲେ । ତେଣୁ ସମାଜ ସେବାରେ ନିଜକୁ ନିୟୋଜିତ କରି ସେ ନିଜର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇଥିଲେ । ସ୍ୱାଧୀନତା ପୂର୍ବରୁ କଂଗ୍ରେସ କର୍ମୀମାନଙ୍କର ଯେଉଁ ନିଷ୍ଠା ଓ ଆଦର୍ଶ ଥିଲା ସ୍ୱାଧୀନତା ପରେ ତାହା ନ ରହିବାରୁ ସେ କଂଗ୍ରେସ ଦଳ ପରିତ୍ୟାଗ କରିବା ପାଇଁ ସ୍ଥିର କରିଥିଲେ । ତାହା ହୋଇ ନଥିଲେ ସେ ପୂର୍ବଭଳି କଂଗ୍ରେସ ଦଳରେ ରହି ଭବିଷ୍ୟତରେ ମନ୍ତ୍ରୀ ହୋଇ ପାରିଥାନ୍ତେ । ରବୀନ୍ଦ୍ର ମୋହନ ନିଜେ କହନ୍ତି ଯେ ଦଳିତ ଅବହେଳିତ ଓ ଶ୍ରମିକ ଶ୍ରେଣୀର ଉନ୍ନତି ପାଇଁ ସେ ରାଜନୀତି କ୍ଷେତ୍ରରେ ପ୍ରବେଶ କରିଥିଲେ । କ୍ଷମତାରେ ଥାଇ ଦାରିଦ୍ରର ସେବା କରିବା ଅପେକ୍ଷା ସେବା ଅନୁଷ୍ଠାନ ମାଧ୍ୟମରେ ଦରିଦ୍ରର ସେବା କରିବାକୁ ସେ ଉପଯୁକ୍ତ କାର୍ଯ୍ୟ ବୋଲି ବିଶ୍ୱାସ କରୁଥିଲେ ।

ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ ୩ୟ ଥର ପାଇଁ ବିଧାନ ସଭାର ସଭ୍ୟଭାବେ ତାଙ୍କୁ ଯେତେବେଳେ ଦଳୀୟକର୍ମୀମାନେ ଅନୁରୋଧ କଲେ ସେତେବେଳେ ସେ ତାହାକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । କାରଣ ପ୍ରତ୍ୟକ୍ଷ ରାଜନୀତିରେ ଅଂଶଗ୍ରହଣ କରିବାରେ ତାଙ୍କର ଆଉ ସଉକ ନାହିଁ ବୋଲି ସେ ସ୍ପଷ୍ଟ କରି ଦେଇଥିଲେ । ସେ କହୁଥିଲେ ଗ୍ରାମ୍ୟ ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ ଗାନ୍ଧିଜୀଙ୍କ ବାଣୀ ''କାଟି ପିନ୍ଧ, କୁଟି ଖାଅ'' ନୀତି ଉପରେ ତାଙ୍କର ଅଗାଧ ଆସ୍ଥା ରହିଛି, ମାତ୍ର ପ୍ରଚଳିତ ଆଦର୍ଶ ଓ ରାଜନୈତିକ ଇଚ୍ଛାଶକ୍ତି ଏହାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ଏଭଳି ଅବସ୍ଥାରେ ସକ୍ରିୟ ରାଜନୀତିରେ ରହିବାର କୌଣସି ଆବଶ୍ୟକତା ନାହିଁ । ଏକ ଚାଟିଆ ଶିଳ୍ପନୀତିର ସେ ଘୋର ବିରୋଧୀ । ବିଜ୍ଞାନର ପ୍ରସାର ସତ୍ତ୍ୱେ କୁଟୀର ଶିଳ୍ପର ଆବଶ୍ୟକତା ରହିଛି ବୋଲି ତାଙ୍କର ମତ । କୁଟୀର ଶିଳ୍ପ ଦ୍ୱାରା ହିଁ ବେକାର ସମସ୍ୟାର ସମାଧାନ ହୋଇପାରିବ ବୋଲି ତାଙ୍କର ଦୃଢ ବିଶ୍ୱାସ, ଆଜିର ଭ୍ରଷ୍ଟ ରାଜନୀତି

ଆଉ ଶୁଦ୍ଧ ଚେତାମାନଙ୍କର ଆଲୋଚନା କକ୍ଷ ନୁହେଁ, ବରଂ ଏହା ଦଳେ ଭଣ୍ଡ ମୁନାଫାଖୋର, ସୁବିଧା ଭୋଗୀ ବ୍ୟକ୍ତିଙ୍କର ଏକ ଆଡଡାସ୍ଥଳୀ, ଏସମସ୍ତବିଚାର ପରିସର ଭିତରକୁ ନେଇ ସକ୍ରିୟ ରାଜନୀତି ଭିତରେ ଅଣନିଶ୍ୱାସୀ ହେବା ଅପେକ୍ଷା ଏଥିରୁ ବିଦାୟ ନେବା ଅନେକ ଗୁଣରେ ଶ୍ରେୟ ବୋଲି ସେ ବିଚାର କରିଛନ୍ତି ।

ସମାଜ ସେବା

ଗାନ୍ଧିଜୀଙ୍କ ଆଦର୍ଶରେ ସେ ସମାଜ ସେବାରେ ବ୍ରତୀ । ସଂଗ୍ରାମୀ ଜୀବନରୁ ବିଶ୍ରାମ ନେବା ପାଇଁ ସେ ସୁଯୋଗ ପାଇ ପାରି ନାହାନ୍ତି । ତାଙ୍କ ପ୍ରଚେଷ୍ଟାରେ ଭଦ୍ରକ ଠାରେ ''ମହାତ୍ମାଗାନ୍ଧି ବିଚାର ମଞ୍ଚ'' ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଛି । ରବୀନ୍ଦ୍ର ମୋହନ ବର୍ତ୍ତମାନ ଏହି ଅନୁଷ୍ଠାନର ସଭାପତି ଅଛନ୍ତି । ଗାନ୍ଧି ବାର୍ତ୍ତା ପ୍ରଚାର ହେଉଛି ଏହାର ମୁଖ୍ୟ ଉଦ୍ଦେଶ୍ୟ । ୧୯୩୪ ମସିହା ଜୁନ୍ ମାସ ୨ ତାରିଖରେ ମହାତ୍ମାଗାନ୍ଧି ପଦଯାତ୍ରାରେ ଆସି ମଞ୍ଜୁରୀ ଗ୍ରାମରେ ପହଞ୍ଚିଥିଲେ । ଏସବୁର ସ୍ମୃତିରକ୍ଷା କରିବା ପାଇଁ ମଞ୍ଚ ପକ୍ଷରୁ ପ୍ରଚେଷ୍ଟା କରାଯାଉଛି । ସେ ନିଜେ ଅନୁଭବ କରୁଛନ୍ତି, ଏବେ ମଧ୍ୟ ଲୋକମାନେ ବିଶ୍ୱାସ କରୁଛନ୍ତି ମହାତ୍ମାଗାନ୍ଧିଙ୍କ ଆଦର୍ଶ ଉପରେ ସେମାନଙ୍କର ଆସ୍ଥା ରହିଛି । ପରିଣତ ବୟସରେ ମଧ୍ୟ ରବୀନ୍ଦ୍ର ମୋହନ ନିପଟ ଗ୍ରାମାଞ୍ଚଳକୁ ପଦଯାତ୍ରାରେ ଯାଇ ମହାତ୍ମାଗାନ୍ଧିଙ୍କ ଦର୍ଶନ ପ୍ରଚାର କରିପାରୁଛନ୍ତି । ହୁଏତ ପ୍ରତ୍ୟକ୍ଷ ରାଜନୀତିରେ ଥିଲେ ଏହା କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇପାରି ନଥାନ୍ତା ।

ମାଳତୀଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କ ନାମରେ ଯେଉଁ ଟ୍ରଷ୍ଟ ଗଠନ କରାଯାଇଛି, ରବୀନ୍ଦ୍ର ମୋହନ ସେହି ଟ୍ରଷ୍ଟର ବର୍ତ୍ତମାନ ଅଧକ୍ଷ । ସଂପ୍ରତି ଏହି ଟ୍ରଷ୍ଟ କୋରାପୁଟ ଓ କଳାହାଣ୍ଡିରେ କାର୍ଯ୍ୟକରି ଆସୁଛି । ଏହି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସମୁଦାୟ ୧୫୦ ଟି 'ନବଜୀବନ ମଣ୍ଡଳ' କେନ୍ଦ୍ର କାର୍ଯ୍ୟ କରୁଛି । ଏହି ମଣ୍ଡଳର କର୍ମୀମାନଙ୍କୁ ଆର୍ଥିକ ସାହାଯ୍ୟ ଟ୍ରଷ୍ଟ ପକ୍ଷରୁ ଯୋଗାଇ ଦିଆଯାଉଛି । 'ବାଲେଶ୍ୱର ବିକାଶ ମଞ୍ଚ' ନାମକ ଯେଉଁ ସଂସ୍ଥାଟି ବର୍ତ୍ତମାନ ରହିଛି, ସେହି ସଂସ୍ଥାର ସଭାପତି ହେଉଛନ୍ତି ରବୀନ୍ଦ୍ର ମୋହନ ଦାସ । ଜୀବନ ସନ୍ଧ୍ୟାରେ ଉପନୀତ ହୋଇ ମଧ୍ୟ ତାଙ୍କର ସ୍ୱପ୍ନ ଅନେକ । ବାଲେଶ୍ୱର ଠାରେ ଏକ 'ଜରାନିବାସ' ପ୍ରତିଷ୍ଠା ପାଇଁ ସେ ଇତି ମଧ୍ୟରେ କାର୍ଯ୍ୟ ଆରମ୍ଭ କରି ଦେଇଛନ୍ତି । ବାର୍ଦ୍ଧକ୍ୟ ଚାପରେ ସେ କେବେ ନଇଁ ପଡି ନାହାଁନ୍ତି ବରଂ କର୍ମ ଚଞ୍ଚଳତା ହିଁ ତାଙ୍କ ଦୈନନ୍ଦିନ ଜୀବନର ଅଂଶ ବିଶେଷ । 'ଜରାନିବା' ପ୍ରତିଷ୍ଠିତ ହୋଇପାରିଲେ ବହୁ ନିଗୃହୀତ, ତଥା ଜରା- ପୀଡିତ ବ୍ୟକ୍ତି ସେଠାରେ ଆଶ୍ରୟ ନେଇ ପାରିବେ । ସମାଜସେବାକୁ ଜୀବନର ଚରମ ଆଦର୍ଶ ଭାବେ ଗ୍ରହଣ କରି ସକ୍ରିୟ ରାଜନୀତିରୁ ଅବସର ଗ୍ରହଣ କରିଥିବା ରବୀନ୍ଦ୍ର ମୋହନ ଯେ ଆଗାମୀ ବଂଶଧର ମାନଙ୍କ ପାଇଁ ନିଶ୍ଚିତ ରୂପେ ଏକ ଆଦର୍ଶ, ଏଥିରେ ସନ୍ଦେହ ନାହିଁ ।

ଉଚ୍ଚ ଶିକ୍ଷା ପ୍ରସାରରେ ରବୀନ୍ଦ୍ର ମୋହନ

ନିଜେ ରବୀନ୍ଦ୍ର ମୋହନ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ କାଳରେ ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ନେଇ ବହିଷ୍କୃତ ହେବା ଯୋଗୁଁ ତାଙ୍କ ଉଚ୍ଚଶିକ୍ଷାରେ ଡୋରି ବନ୍ଧା ହୋଇଥିଲା । ଉଚ୍ଚଶିକ୍ଷାର ପ୍ରସାର ପାଇଁ ରବୀନ୍ଦ୍ର ମୋହନ ଦୀର୍ଘ ୩୦ ବର୍ଷ ଧରି ବାଲେଶ୍ୱରରେ କାର୍ଯ୍ୟରତ ଅଛନ୍ତି । ପରିଣତ ବୟସରେ ବାଲେଶ୍ୱର ଠାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଛାତ୍ରଛାତ୍ରୀଙ୍କୁ ଉଚ୍ଚଶିକ୍ଷାର ସୁଯୋଗ ଦେବାକୁ ସେ ନିଷ୍ଠାପର ଉଦ୍ୟମ କରିଛନ୍ତି । ସ୍ୱର୍ଗତ ପ୍ରଫେସର ପ୍ରଫୁଲ କୁମାର ରଥଙ୍କ ନେତୃତ୍ୱରେ Education Foundation ବା 'ଶିକ୍ଷା ପରିଷଦ' ନାମରେ ଏକ ବେସରକାରୀ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଥିଲା । ଏହାର ଉଦ୍ଦେଶ୍ୟ ଥିଲା ବାଲେଶ୍ୱରରେ ଉଚ୍ଚଶିକ୍ଷାର ପ୍ରସାର କରିବା । ସେହି ଅନୁଷ୍ଠାନ ଜରିଆରେ ବାଲେଶ୍ୱରର କତିପୟ ଶିକ୍ଷାପ୍ରେମୀ ଏକସ୍ନାତକୋତ୍ତର ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଉଦ୍ୟମ ଆରମ୍ଭ କଲେ ।

ନିଜେ ରବୀନ୍ଦ୍ର ମୋହନ ଥିଲେ ଏହି ଅନୁଷ୍ଠାନର ସଂପାଦକ । ପ୍ରଥମେ ଏହି ଶିକ୍ଷାନୁଷ୍ଠାନର ନାମ ରଖାଗଲା "Vyasa Kabi Institute of Post Graguate Studies" "Oriya Political Science, English, Public Administration" ନାମରେ ଚାରିଗୋଟି ବିଷୟରେ ଶିକ୍ଷାଦାନ ପାଇଁ ବ୍ୟବସ୍ଥା କରାଗଲା । ଏହି ଶିକ୍ଷାନୁଷ୍ଠାନର ଉଦ୍‌ଘଟକ ଥିଲେ ତତ୍‌କାଳୀନ ଭାରତର ଶିକ୍ଷା ଓ ଯୁବକଲ୍ୟାଣ ବିଭାଗର ମନ୍ତ୍ରୀ P.C. Chandar । ଆଶା କରାଯାଉଥିଲା ଖୁବ୍ ଶୀଘ୍ର ସରକାର ଏହାକୁ ସ୍ୱୀକୃତି ପ୍ରଦାନ କରିବେ । ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । କାରଣ ସରକାରୀ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ବ୍ୟତୀତ କୌଣସି ବେସକାରୀ ଅନୁଷ୍ଠାନରେ ସେତେବେଳେ ଉପାଧ୍ୟୁତ୍ତର ଶ୍ରେଣୀ ଖୋଲି ନଥିଲା । ବହୁ ପ୍ରତିବନ୍ଧକ ଭିତରେ ଏଭଳି ଶିକ୍ଷାଦାନ ଚାଲିଲା । ଏକ ବେସରକାରୀ ଓ ସଂପୂର୍ଣ୍ଣ ଘରୋଇ ଶିକ୍ଷାନୁଷ୍ଠାନ ଭାବରେ ଏହା ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ସହ ବନ୍ଧିତ ହେଲା ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ଅନୁଯାୟୀ ଫକୀରମୋହନ ମହାବିଦ୍ୟାଳୟରେ ପରୀକ୍ଷା ଦେଲା । ଏହି ଅନୁଷ୍ଠାନର ପରୀକ୍ଷା ଫଳ ଆଶାତୀତ ଭାବରେ ଉଚ୍ଚମାନ ରକ୍ଷା କରି ପାରିଥିଲା । ପରେ ଅବଶ୍ୟ ଏହି ଅନୁଷ୍ଠାନ ନିଜେ ପରୀକ୍ଷା ପରିଚାଳନା କରିଛି ।

ଯେହେତୁ ଉତ୍କଳ ବିଶ୍ୱବିଦ୍ୟାଳୟର ଛାତ୍ର ସଂଖ୍ୟା ଆଶାତୀତ ଭାବରେ ବଢ଼ି ଚାଲିଥିଲା ସେତେବେଳେ ବୁଦ୍ଧିଜିବୀମାନେ ଅନୁଭବ କରିଥିଲେ ଯେ ଉତ୍ତର ଓଡିଶାରେ ଅନ୍ୟ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବା ଉଚିତ୍ । ଏଭଳି ଏକ ସମ୍ଭାବନାକୁ ପାଥେୟକରି ରବୀନ୍ଦ୍ର ମୋହନ ଓ ଅନ୍ୟକେତେ ଜଣ ଶିକ୍ଷାବିତ୍ ବାଲେଶ୍ୱର ଠାରେ ଉତ୍ତର ଓଡିଶା ବିଶ୍ୱବିଦ୍ୟାଳୟ ପାଇଁ ଦାବି ଉପସ୍ଥାପନ କଲେ । ଇତିମଧ୍ୟରେ ରାଜନୈତିକ ଇଚ୍ଛା ଶକ୍ତିର ଅଭାବ ଯୋଗୁଁ ଏବଂ କେତେକଙ୍କ ଦୁରଭିସନ୍ଧି ହେତୁ ବାରିପଦା ଠାରେ ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଦାବୀ ଉପସ୍ଥାପନ କରାଗଲା । ଫଳରେ ଏଦିଗରେ କୌଣସି ଏକ ଫଳପ୍ରଦ ଭୂମିକା ନେବାପାଇଁ ସରକାର ପଛଘୁଞ୍ଚା ଦେଲେ । ମଝିରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C) ବାଲେଶ୍ୱର ପରିଦର୍ଶନ କରି ବାଲେଶ୍ୱର ବିଶ୍ୱବିଦ୍ୟାଳୟ ପାଇଁ ଉପଯୁକ୍ତ ବୋଲି ପରିଦର୍ଶନରେ ମନ୍ତବ୍ୟ ଦେଇଥିଲେ । ମାତ୍ର ତତ୍‌କାଳୀନ ସରକାର ଏହାକୁ ଶୀତଳ ଭଣ୍ଡାରରେ ଲୁଚାଇ ରଖିଥିଲେ । ଇତି ମଧ୍ୟରେ ରବୀନ୍ଦ୍ର ମୋହନ ଦାସ ନାନା ବେସରକାରୀ ସୂତ୍ରରୁ କିଛି  କିଛି ଅର୍ଥ ସଞ୍ଚୟ କରି ରେମୁଣା ଗୋଲେଇ ଠାରେ ପାଞ୍ଚ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ୯ ଏକର ଜମିକୁ ନେଇ ତାହାରି ଉପରେ ଚାରି ମହଲା ବିଶିଷ୍ଟ ଏକ ବିଶାଳ କୋଠା ନିର୍ମାଣ କଲେ । ତେଣୁ ପ୍ରଥମେ ଟାଉନ୍ ହଲ, ଟାଉନ ହାଇସ୍କୁଲ ଓ ନୃତ୍ୟସଙ୍ଗୀତ କଳା ମନ୍ଦିର ରେ ଚାଲୁଥିବା ଉପାଧ୍ୟୁତ୍ତର ଶ୍ରେଣୀ ଗୁଡିକ ଏହି ନୂତନ କୋଠାକୁ ସ୍ଥାନାନ୍ତରିତ ହୋଇଥିଲା । ଯେଉଁ ବିଶାଳ କୋଠାରେ ଏହି ଶିକ୍ଷାଦାନ ଚାଲିଲା, ତାହା ଯେ କିଭଳି ନିର୍ମିତ ହେଲା ଏବଂ ତାହା ପଛରେ କିଭଳି ସାଧୁ ଉଦ୍ୟମ ଥିଲା ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡିଥାଏ । ବାଲେଶ୍ୱରର ଅନ୍ୟତମ ବାସିନ୍ଦା ସ୍ୱର୍ଗତଃ Advocate କୃଷ୍ଣପ୍ରସାଦ ମହାନ୍ତି ଓ ସ୍ୱର୍ଗତଃ I.A.S Officer ମଇନୁଦ୍ଦିନ ଅହମ୍ମଦଙ୍କ ଉଦ୍ୟମରେ ବିଶ୍ୱବିଦ୍ୟାଳୟ କ୍ରିୟାନୁଷ୍ଠାନ କମିଟି ଗଠନ କରାଗଲା ଓ ସରକାରଙ୍କ ନିକଟରେ ଦାବି ଉପସ୍ଥାପନ କରାଗଲା । ବାଲେଶ୍ୱରର ଛାତ୍ରମାନଙ୍କ ରାସ୍ତା ଅବରୋଧ, ଗଣ ଆନ୍ଦୋଳନ, ହରତାଳ ଓ ଅନଶନ ସତ୍ତ୍ୱେ ସରକାରୀ କଳର କୁମ୍ଭକର୍ଣ୍ଣ ନିଦ୍ରା ଭାଙ୍ଗି ନଥିଲା । ଏସବୁ ପ୍ରତିକୂଳ ପରିବେଶ ସତ୍ତ୍ୱେ ରବୀନ୍ଦ୍ର ମୋହନ ସଂପୂର୍ଣ୍ଣ ରୂପେ ଆଶାବାଦୀ ଥିଲେ ଯେ ବାଲେଶ୍ୱରରେ ବିଶ୍ୱବିଦ୍ୟାଳୟଟିଏ  ନିଶ୍ଚିତ ଭାବରେ ହେବ । ଶେଷରେ ୧୯୯୯ ମସିହା ଜୁଲାଇ ୧୧ ତାରିଖରେ ସରକାରଙ୍କ ଘୋଷଣା କ୍ରମେ ବାଲେଶ୍ୱରରେ ଯେଉଁ ବିଶ୍ୱବିଦ୍ୟାଳୟ ଗଠିତ ହେଲା ତାହାର ନାମ ହେଲା "ଫକୀର ମୋହନ

ବିଶ୍ୱବିଦ୍ୟାଳୟ'', ଓ ବାରିପଦାରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟର ନାମ ହେଲା- ''ଉତ୍ତର ଓଡିଶା ବିଶ୍ୱବିଦ୍ୟାଳୟ'' । ଉଚ୍ଚଶିକ୍ଷାର ପ୍ରସାର ନିମନ୍ତେ ତାଙ୍କର ନିଷ୍ଠାପର ଉଦ୍ୟମ ଓ ତ୍ୟାଗ ଅତୁଳନୀୟ । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ତାଙ୍କର ଧୈର୍ଯ୍ୟ, ଆତ୍ମବିଶ୍ୱାସ ଓ ଦୃଢମନୋବଳ ଦେଖିଲେ ଯେ କୌଣସି ବ୍ୟକ୍ତିର ମସ୍ତକ ତାଙ୍କ ପାଖରେ ଅବନତ ହୋଇଯିବ । ମାତ୍ର ଗଭୀର ପରିତାପର ବିଷୟ ଯେ ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠା ପରେ ବି ଏହା କେବଳ ପରୀକ୍ଷା କାର୍ଯ୍ୟ ପରିଚାଳନା କରୁଛି । ଶିକ୍ଷାଦାନ ପାଇଁ କୌଣସି ଅନୁଦାନ ଏପର୍ଯ୍ୟନ୍ତ ପାଇନାହିଁ । ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ପୃଷ୍ଠଭୂମିରେ ଯେଉଁ କ୍ରାନ୍ତିବୀରଙ୍କ ବଳିଷ୍ଠ ଭୂମିକା ରହିଛି ସେ ହେଉଛନ୍ତି ରବୀନ୍ଦ୍ର ମୋହନ ଦାସ । ୧୯୭୮ ରୁ ୧୯୯୯ ମସିହା ଯାଏଁ ଦୀର୍ଘ ଦୁଇ ଦଶନ୍ଧି ରୁ ଉର୍ଦ୍ଧ୍ୱକାଳ ମଧ୍ୟରେ ହଜାର୍ ହଜାର ଛାତ୍ର ଉତ୍ତୀର୍ଣ୍ଣ ହୋଇ ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଆସିଛନ୍ତି ।

ରବୀନ୍ଦ୍ର ମୋହନ ଓ ଅନ୍ୟ କେତେ ଜଣଙ୍କ ଉଦ୍ୟମରେ ବାଲେଶ୍ୱର ଠାରେ ଏକ 'ଆଇନ ମହା ବିଦ୍ୟାଳୟ' ମଧ୍ୟ ପ୍ରତିଷ୍ଠା କରାଯାଇଛି । ଆଇନ୍ ଅଧ୍ୟୟନ ପାଇଁ ଛାତ୍ରମାନଙ୍କୁ ଭୁବନେଶ୍ୱର କିମ୍ବା କଟକ ଯିବାକୁ ପଡୁଥିଲା । କିନ୍ତୁ ବାଲେଶ୍ୱର ଠାରେ ଏହି ମହାବିଦ୍ୟାଳୟ ପ୍ରତିଷ୍ଠା ହେବା ଫଳରେ ବହୁ ଦିନର ଆଶା ଯେ ଫଳବତୀ ହୋଇପାରିଛି ଏଥିରେ ସନ୍ଦେହର ଅବକାଶ ନାହିଁ । Education Foundation ର ନେତୃତ୍ୱ ଓ ରବୀନ୍ଦ୍ର ମୋହନ ଦାସଙ୍କ ଉଦ୍ୟମ ହେତୁ ମହା ବିଦ୍ୟାଳୟ ପ୍ରତିଷ୍ଠା ସୁଗମ ହୋଇ ପାରିଛି । ତାଙ୍କ ନେତୃତ୍ୱରେ ମଧ୍ୟ ଶୋଭା ରାମପୁର ଠାରେ 'ବାଲେଶ୍ୱର ମହାବିଦ୍ୟାଳୟ' ପ୍ରତିଷ୍ଠା ରାଯାଇଛି । ଏହା ବ୍ୟତିତ ବାଲେଶ୍ୱରର ମିଶନ୍ କମ୍ପାଉଣ୍ଡ ନିକଟରେ ଯେଉଁ ''ଅନ୍ଧ, ମୂକ, ବଧିର'' ବିଦ୍ୟାଳୟଟିଏ ସ୍ଥପିତ ହୋଇଛି ତାହାର ନେତୃତ୍ୱ ନେଇଛନ୍ତି ରବୀନ୍ଦ୍ର ମୋହନ ଦାସ । ଏହି ବିଦ୍ୟାଳୟଟି ବର୍ତ୍ତମାନ ଏକ ସ୍ୱୟଂ-ସଂପୂର୍ଣ୍ଣ ମାନ୍ୟତା ପାଇବାକୁ ହକ୍‌ଦାର ହୋଇପାରିଛି ।

ସୋର ଠାରେ ଅନୁଷ୍ଠିତ 'କନ୍ୟାଶ୍ରମ ର ଉନ୍ନତି ଓ ବିକାଶ ତାଙ୍କ ଦ୍ୱାରା ହୋଇପାରିଛି । କେବଳ ଉଚ୍ଚଶିକ୍ଷା ପାଇଁ ନୁହେଁ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟର ଉନ୍ନତି ପାଇଁ ମଧ୍ୟ ସେ ବେଶ୍ ତତ୍‌ପର । ଗୁରୁକୁଳ ଆଶ୍ରମର ଶିକ୍ଷା ବ୍ୟବସ୍ଥା ପ୍ରତି ତାଙ୍କର ଅହେତୁକ ମମତା ଥିବା ସର୍ବଜନ ବିଦିତ ।

ରବୀନ୍ଦ୍ର ମୋହନଙ୍କ ମତରେ ସ୍ୱାଧୀନତାର ୫୦ ବର୍ଷ ପରେ ମଧ୍ୟ ଗାନ୍ଧିଜୀଙ୍କ ଶେଷ ଇଚ୍ଛା ପୂର୍ଣ୍ଣ ହୋଇନାହିଁ । ଦେଶର ୭୦ ଭାଗ ଲୋକଙ୍କ ପାଇଁ ଅର୍ଥନୈତିକ ସ୍ୱାଧୀନତା ଆସି ପାରି ନାହିଁ । ସୋମାନଙ୍କ ସାମାଜିକ ଓ ନୈତିକ ମାନଦଣ୍ଡର

ଉନ୍ନତି ମଧ୍ୟ ଘଟି ନାହିଁ । ଗାନ୍ଧିଜୀଙ୍କ ସେହି ଅପୂର୍ଣ୍ଣ ଇଚ୍ଛାକୁ ପୂର୍ଣ୍ଣ କରିବା ପାଇଁ ନିଜର ଅବଶିଷ୍ଟ ଜୀବନକୁ ଉତ୍ସର୍ଗ କରି ଦେଇଛନ୍ତି ରବୀନ୍ଦ୍ର ମୋହନ । ତାଙ୍କର ତ୍ୟାଗପୂତ ଅନଳସ ଆଦର୍ଶ ଜୀବନ ଆମ ଦେଶର ଭବିଷ୍ୟତ ବଂଶଧର ମାନଙ୍କ ପାଇଁ ଏକ ଅନୁକରଣୀୟ ଆଦର୍ଶ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ଚଳିତ ୨୦୦୪ ଫେବୃୟାରୀ ୧୨ ତାରିଖରେ ସେ ୯୩ ବର୍ଷରେ ପଦାର୍ପଣ କରିବେ । ବୟସର ଚାପରେ ସେ ମଉଳି ଯିବା ବ୍ୟକ୍ତି ନୁହଁନ୍ତି । ଅତୀତର ସ୍ମୃତି ରୋମନ୍ଥନ କରି ସେ କହନ୍ତି, ସ୍ୱଦେଶୀ ବାର୍ତ୍ତା ପ୍ରଚାର କରିବା ଓ ସାଧାରଣ ଜନତାଙ୍କ ସହ ମିଶି କାର୍ଯ୍ୟ କରିବାରେ ଯେଉଁ ଆନନ୍ଦ ଅଛି, ତାହା ମନ୍ତ୍ରୀ ଅବା ସେନାପତିର ଆନନ୍ଦ ଠାରୁ ଯଥେଷ୍ଟ ଅଧିକ । ଏହି ବର୍ଷିୟାନ୍ ଜନନେତା ଦୀର୍ଘ ଜୀବୀ ହେଲେ ଉତ୍କଳଜନନୀର ମୁଖଉଜ୍ଜ୍ୱଳ ହେବା ସଙ୍ଗେ ସଙ୍ଗେ ଦେଶର ତଥା ସମାଜର ନିଶ୍ଚୟ ପ୍ରଗତି ସାଧିତ ହେବ, ଏଥିରେ ସନ୍ଦେହ ନାହିଁ ।



# ଦଣ୍ଡପାଣି ମିଶ୍ର : ଏକ ବହୁମୁଖୀ ପ୍ରତିଭା

● ପଙ୍କଜ ସାହୁ

● ସୁରେଶ ବଳବନ୍ତ ରାୟ

ମୁହଁରେ ଦାଢ଼ି, ହାତରେ ବଙ୍କୁଲି ବାଡି, ପରିଧେୟ ହେଉଛି ଖଦଡର ଧୋତି, ପଞ୍ଜାବୀ, ଉତ୍ତରୀୟ ଓ କାନ୍ଧରେ ଝୁଲାମୁଣି । ସେ ସବୁ ପୁଣି ଗେରୁଆ ରଙ୍ଗର । ଚିରଚଞ୍ଚଳ, ପ୍ରଶାନ୍ତ ଚାହାଣି, ସ୍ନେହବତ୍ସଳ ସରଳ ମଣିଷଟିଏ ସେ । ପାଖରେ ତାଙ୍କର ପହଞ୍ଚିଲେ ନମସ୍କାର ବିନିମୟ ଅବସରରେ ଏହି ଯେଉଁ ଋଷି ପ୍ରତିମ ବ୍ୟକ୍ତିଙ୍କ ଶ୍ମଶ୍ରୁଚିରି 'ବିଶାଶହେ (୧୨୦) ବର୍ଷ ଜୀଅଁ, ବୋଲି ଅମୃତଆଶୀର୍ବାଦ ଝରିପଡେ; ସେ ହେଉଛନ୍ତି ସତାଅଶୀ ବର୍ଷବୟସ୍କ ସ୍ୱାଧୀନତା ସଂଗ୍ରାମୀ, ସୁସାହିତ୍ୟିକ, ମହାନ ବିପ୍ଳବୀ, ସମାଜ ସଂସ୍କାରକ ସର୍ବୋପରି ନିର୍ଭୀକ ସାମ୍ବାଦିକ ଶ୍ରୀଯୁକ୍ତ ଦଣ୍ଡପାଣି ମିଶ୍ର ।

ଅଧୁନାତନ ନୟାଗଡ ଜିଲାର ପୁଣ୍ୟପୀଠ ଶରଣକୁଳ ନିକଟବର୍ତ୍ତୀ ହରିହର ପୁର ଶାସନର ଭିକାରିପଡା ଗ୍ରାମରେ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ୧୯୧୭ ମସିହା ମାର୍ଚ୍ଚ ୩୦ ତାରିଖରେ ପିତା ୰ଭାଗୀରଥୀ ମିଶ୍ର ମାତା ୰ତିଳୋତ୍ତମା ଦେବୀଙ୍କ ଗର୍ଭରୁ ପ୍ରଥମ ସନ୍ତାନ ରୂପେ ଭୂମିଷ୍ଠ ହୋଇଥିଲେ ଶ୍ରୀଯୁକ୍ତ ଦଣ୍ଡପାଣି ମିଶ୍ର ।

ଦଣ୍ଡପାଣିଙ୍କର ପୂର୍ବ ପୁରୁଷ ଥିଲେ ଗଞ୍ଜାମ ଅଞ୍ଚଳର ବାସିନ୍ଦା । ଚାରିଭାଇଙ୍କ ମଧ୍ୟରେ ଦଣ୍ଡପାଣି ଥିଲେ ବଡ । ତାଙ୍କ ପିତାଥିଲେ ଏକ ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ । ତେଣୁ ଦଣ୍ଡପାଣିଙ୍କର ଶୈଶବ ଏମିତି ଏକ ପ୍ରାଚୁର୍ଯ୍ୟ ମଧ୍ୟରେ ଅତିବାହିତ ହୋଇ ନଥିଲା । ଦଣ୍ଡପାଣି ଥିଲେ ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ବଂଶର ଦାୟାଦ ।

ଦଣ୍ଡପାଣିଙ୍କର ପଟ୍ଟନାୟକଙ୍କ ଠାରୁ ଏହାପରେ ଦଣ୍ଡପାଣି ଗାଁ ପାଖରେ ନୂଆ କରି ଖୋଲିଥିବା ନିମ୍ନପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାନ୍ତି । ୪ର୍ଥ ଶ୍ରେଣୀ ବେଳକୁ ଦଣ୍ଡପାଣି ଶରଣକୁଳ ଉପ୍ରା ବିଦ୍ୟାଳୟରେ ଯୋଗଦିଅନ୍ତି । ଏହା ମଧ୍ୟରେ ଶିକ୍ଷାପ୍ରତି ପ୍ରଗାଢ଼ ଅନୁରକ୍ତି ଯୋଗୁ ଧରାକୋଟ ରାଜାଙ୍କ ଦ୍ୱାରା ପରିଚାଳିତ ସଂସ୍କୃତ ଟୋଲ୍‌ରେ

ସଂସ୍କୃତ ଭାଷା ଶିକ୍ଷା କରନ୍ତି ଦଣ୍ଡପାଣି । ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷାରେ କୃତିତ୍ୱର ସହିତ ବୃତ୍ତି ଲାଭ କରନ୍ତି ସେ । ଶରଣକୁଳ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କାଳରେ ସେ ହିନ୍ଦୀ ଭାଷା ଅଧ୍ୟୟନ କରି ସେଥିରେ ବ୍ୟୁତ୍ପତ୍ତି ଲାଭ କରନ୍ତି । ତା'ପରେ ସେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଅଧୀନରେ ବ୍ରହ୍ମପୁରର ମିସନ ସ୍କୁଲରୁ କୃତିତ୍ୱ ସହିତ ମାଟ୍ରିକ ପାଶ କରନ୍ତି । ଛାତ୍ରାବସ୍ଥାରୁ ଜାତୀୟବାଦୀ ଚେତନାରେ ଅନୁପ୍ରାଣୀତ ହୋଇ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଜଣେ ସୈନିକ ଭାବରେ ଯୋଗଦେଇ ସେ ଦେଶ ଭକ୍ତିର  ପରିଚୟ ପ୍ରଦାନ କରନ୍ତି । ଏବଂ ସେହିଦିନ ଠାରୁ ଖଦଡ ପିନ୍ଧିବା ଆରମ୍ଭ କରନ୍ତି ।

ତାଙ୍କର ତରୁଣ ବୟସରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଉଦ୍ଦେଶ୍ୟରେ ମାଡ୍ରାସ ପ୍ରେସିଡେନ୍ସି ଅଧୀନସ୍ଥ ଗଞ୍ଜାମ ଜିଲା ଓ ମଧ୍ୟପ୍ରଦେଶ ସେଣ୍ଟ୍ରାଲ ପ୍ରୋଭିଜନ୍‌ସି ଅନ୍ତର୍ଗତ ସମ୍ବଲପୁର ମିଶ୍ରଣ ଦିଗରେ ମଧୁସୂଦନ ଦାସ ପ୍ରମୁଖଙ୍କ ଆହ୍ୱାନ କ୍ରମେ ଉଦ୍‌ବୁଦ୍ଧ ହୋଇ ଦଣ୍ଡପାଣି ମିଶ୍ର ଗଞ୍ଜାମ ଜିଲାରେ ଜନମତ ଜାଗରଣ, ଗଡଜାତ ଆନ୍ଦୋଳନରେ ସକ୍ରିୟ ଭାବେ ଅଂଶଗ୍ରହଣ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ପାଇଁ ସେ ୧୯୯୫ ରେ ମହତାବ ଜୟନ୍ତୀ କମିଟି ଭୁବନେଶ୍ୱର, ଓଡିଶା ସାମ୍ବାଦିକ ସଂଘ ଭୁବନେଶ୍ୱର ତରଫରୁ, ୧୯୯୭ ରେ ଭାରତୀୟ ଜନତାପାର୍ଟି ଭୁବନେଶ୍ୱର ମଣ୍ଡଳ ଦ୍ୱାରା ସ୍ୱାଧୀନତା ସଂଗ୍ରାମୀ ସମ୍ମାନରେ ସମ୍ମାନୀତ ହୋଇଛନ୍ତି ।

ଚବିଶି ବର୍ଷ ବୟସରେ ସାବିତ୍ରୀ ଦେବୀଙ୍କୁ ବିବାହ କରିଥିବା ଦଣ୍ଡପାଣି ମିଶ୍ର ବାବାଜି ଭଳି ଦେଖାଯାଉଥିଲେ ହେଁ ସେ ହେଉଛନ୍ତି ବାସ୍ତବରେ ଏକ ପୋଖତ ସଂସାରୀ । କଥାରେ କବିତା ଫୁଟେ, ବାର୍ଦ୍ଧକ୍ୟେ ଯୌବନ ଛୁଟେ । ସେ ଜଣେ ବଡ କଳ୍ପନାବିଳାସୀ । ଏହି ଦୁର୍ଦ୍ଦାନ୍ତ ତରୁଣଙ୍କ ବୟସ ସତାଅଶୀ । ବୟସ କେବେ ପାଦଛନ୍ଦି ନାହିଁ ଏହି ଖିଆଲି ଯାଯାବରଙ୍କର । ବହୁ ସନ୍ତାନର ଜନକ ହେଲେ ବି ଦଣ୍ଡପାଣି ମିଶ୍ର ଜଣେ ବେପରୁଆ ବ୍ୟାଚେଲର ଭଳି ସ୍ୱଭାବସୁଲଭ୍ ଢ଼ଙ୍ଗରେ କହିଥାନ୍ତି "ମୋର ସାତଟି ପୁଅ, ଦୁଇଟି ଝିଅ, ତଥାପି କାହିଁକି ମୋତେ ବାବାଜି କୁହ ?" ତେଲ ଲୁଣର ସଂସାର ଚଳାଇ ପିଲାମାନଙ୍କୁ ମଣିଷ କରିବା ପାଇଁ ଶ୍ରୀ ଯୁକ୍ତ ଦଣ୍ଡପାଣି ମିଶ୍ର ପ୍ରଥମେ ନୟାଗଡରେ କୋଡିଏ ଟଙ୍କା ବେତନରେ ଚାକିରୀ ଆରମ୍ଭ କରିଥିଲେ ।

ସୃଜନ-ମନସ୍କ-ଦଣ୍ଡପାଣି-ଙ୍କର ସ୍ୱାଧୀନତା ସଂଗ୍ରାମ ତଥା ଗଡଜାତ ଆନ୍ଦୋଳନରୁ କବିପ୍ରତିଭାର ଅଭ୍ୟୁଦୟ ଘଟିଅଛି । ସ୍ୱାଧୀନତା ପୂର୍ବରୁ ଓ ପରେ ନିସ୍ତେଜ ହୋଇ ପଡିଥିବା ଜାତିକୁ ନବ ଉନ୍ମାଦନାରେ ଅଭିଷିକ୍ତ କରିବା ପାଇଁ ଦଣ୍ଡପାଣି

ମିଶ୍ର ତତ୍କାଳୀନ ସମାଜର ଏକ ସାର୍ଥକ ରୂପକାର ଥିଲେ । ଓଡିଆ ସାହିତ୍ୟ ସଂସ୍କୃତିର ବନ୍ଧୁର ପଥରେ ସେ ଜଣେ ନିର୍ଭୀକ ତଥା ସଚେତନ ପଥିକ ରୂପେ ପଦସଂପାତ ପୂର୍ବ ନିଷ୍ଠା ଓ ଦୃଢ଼ସଙ୍କଳ୍ପକୁ ଉପଜୀବ୍ୟ କରି ଓଡିଆ ଜାତିର ସ୍ୱାର୍ଥ ଏବଂ ସ୍ୱାଭିମାନ ପ୍ରତିଷ୍ଠା ନିମିତ୍ତ ସେ ସାତଦଶନ୍ଧି ବ୍ୟାପୀ ଓଡିଆ ଭାଷା ସାହିତ୍ୟର ଶ୍ରୀବୃଦ୍ଧି ତଥା ପ୍ରଚାର ପ୍ରସାର ପାଇଁ ନିରବଚ୍ଛିନ୍ନ ଭାବେ ଲେଖନୀ ଚାଳନା କରି ସମାଜର ପ୍ରତ୍ୟେକ ସ୍ତରରେ ସମାଦୃତ ହୋଇ ଅଛନ୍ତି । ଓଡିଆ ଜନଜୀବନକୁ ନୂତନ ଭାବରେ ଗଢ଼ିତୋଳିବାର ପ୍ରଚେଷ୍ଟା ଯୋଗୁ ୧୯୪୬ ରେ 'ଶଙ୍ଖ' ପତ୍ରିକାର ସମ୍ପାଦକୀୟରେ ପ୍ରଜ୍ଞାପ୍ରାଣ କବି ମାୟାଧର ମାନସିଂହ ଲେଖିଥିଲେ- ''ନୟାଗଡର ତରୁଣ ସାହିତ୍ୟସେବୀଙ୍କ ଭିତରେ ଶ୍ରୀମାନ ଦଣ୍ଡପାଣି ମିଶ୍ର ଅଗ୍ରଗଣ୍ୟ । ୟାଙ୍କର ଇତିହାସ ଶୁଣି ଓ କର୍ମାବଳୀ ଦେଖି ମୁଁ ନିଜେ ଆତ୍ମଲଜ୍ଜା ଅନୁଭବ କରିଛି ଏବଂ ତାଙ୍କର କଥା 'ଶଙ୍ଖ' ରେ ଲେଖୁଛି ଏହି ଉଦ୍ଦେଶ୍ୟରେ ଯେ ଓଡିଆ ଦେଶର ସର୍ବତ୍ର ତାଙ୍କର ଆଦର୍ଶ ଅନୁକୃତ ହେବା ସର୍ବଥା ଉଚିତ୍ ।'' ତାରୁଣ୍ୟରୁ ପରିଣତ ବୟସ ପର୍ଯ୍ୟନ୍ତ ତାଙ୍କର ନିରଳସ ସାରସତ୍ୱ ସାଧନା ବାସ୍ତବରେ ଯୁବ ସମ୍ପ୍ରଦାୟର ପ୍ରେରଣାର ଉତ୍ସରେ ପରିଣତ ହୋଇଅଛି ।

ମାଇନର ସ୍କୁଲରେ ପାଠ ପଢୁଥିଲା ବେଳେ ଦଣ୍ଡପାଣି ହାତଲେଖା ପତ୍ରିକାଟିଏ ପ୍ରକାଶ କରିବାକୁ ସକ୍ଷମ ହେଲେ । ଦଣ୍ଡପାଣିଙ୍କର ଏହି ଉଦ୍ୟମ ଦେଖି ତାଙ୍କର ଶିକ୍ଷକମାନେ ତାଙ୍କୁ ଭୂୟସୀ ପ୍ରଶଂସା କଲେ । ଏପରିକି ଶ୍ରେଣୀ ଗୃହରେ ଲେଖିବା ପାଇଁ ଦିଆଯାଉଥିବା ରଚନାକୁ ସେ କବିତାରେ ହିଁ ବେଳେ ବେଳେ ଲେଖିପକାଉଥିଲେ । ୧୯୩୮ ମସିହାରେ ତାଙ୍କର ପ୍ରଥମ କବିତା ସାପ୍ତାହିକ ନବୀନରେ ପ୍ରକାଶିତ ହୋଇ ପ୍ରକାଶନର ଆଲୋକ ଦେଖିବାରେ ସକ୍ଷମ ହେଲା । ଏହାପରେ ଆଉ ପଛକୁ ଫେରି ଚାହିଁବାର ଅବକାଶ ପାଇ ନାହାଁନ୍ତି ଦଣ୍ଡପାଣି ।

କବି ଦଣ୍ଡପାଣିଙ୍କ ବିଭିନ୍ନ ରଚନାରେ ସମାଜ ସଂସ୍କାର ମୁଖୀ ଶାଣିତ ବ୍ୟଙ୍ଗ, ଜୀବନକୁ ସରସ ସୁନ୍ଦର କରି ଗଢ଼ିତୋଳିବାର ସହଜସୂତ୍ର, ବାସ୍ତବିକତା ସହ ତାଙ୍କର ଦରଦୀ ହୃଦୟର ସାବଲୀଳ ସଂଯୋଗ ହେଉଛି, ତାଙ୍କ କବିତାର ଦୁଇଟି ଧାର । ଗୋଟିଏ ପଟେ ପ୍ରେମ ଓ ଅନ୍ୟପଟେ ବିପ୍ଳବର ସ୍ୱର । ସେଥିପାଇଁ କଥାକାର ଅଖିଳମୋହନ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି- ''ପ୍ରଳୟ ଓ ପ୍ରଣୟର କବି ଦଣ୍ଡପାଣି ବ୍ଲେଡ୍‌ଟିଏ ।'' ଛତ୍ରେ ଛତ୍ରେ ପ୍ରେମ ସାଙ୍ଗକୁ ସଂସ୍କାରଧର୍ମୀ ମନର ଶାଣିତ ବ୍ୟଙ୍ଗ ଫୁଟି ଉଠିଛି ତାଙ୍କ କବିତା ଗୁଡିକରେ । ପ୍ରେମ ବିଭୋର କବି ତରୁଣ ବୟସରେ ସାହିତ୍ୟ

ପାଇଁ ସମ୍ପୂର୍ଣ୍ଣତଃ ନିଜକୁ ସମର୍ପିତ କରିଛନ୍ତି । ସ୍ନେହ, ପ୍ରୀତି, ସମ୍ଭାବନା, ବିଦ୍ରୋହ, ସଂସ୍କାରର ବାସ୍ନାରେ ବାସ୍ନାୟିତ ତାଙ୍କର କବିତାଗୁଡିକ ଓଡିଶାର ବିଦଗ୍ଧ ପାଠକ ମହଲରେ ବେଶ୍ ଆଦୃତ । କବି ଦଣ୍ଡପାଣିଙ୍କ କବିତାଗୁଡିକ ଗୀତିକବିତାର ବୈଶିଷ୍ଟ୍ୟରେ ବିମଣ୍ଡିତ । ସ୍ୱତଃସ୍ଫୁର୍ତ୍ତ ଆବେଗର ଅଫୁରନ୍ତ ଉଚ୍ଛ୍ୱସ ମଧ୍ୟରେ ଛାନ୍ଦସିକ୍ ଭାଷାଲାଳିତ୍ୟ ଯୋଗୁ ତାଙ୍କର କବିତ୍ୱର ଅଧିକାଂଶ ମୁହୂର୍ତ୍ତ ବେଶ୍ ଗୀତିମୟ । ଆଧୁନିକ ଓଡିଆ କବିତା ଦୁର୍ବୋଧ୍ୟ ଯୋଗୁ ଯେପରି ଅପାଙ୍‌କ୍ତେୟ ହୋଇପଡିଛି, କବି ଦଣ୍ଡପାଣିଙ୍କ କବିତା କ୍ଷେତ୍ରରେ ସେପରି ଘଟି ନାହିଁ । ମିଥ୍, ରୂପକଳ୍ପ/ଚିତ୍ରକଳ୍ପର ରମଣୀୟ ସମାବେଶ ହୁଏତ ତାଙ୍କ କବିତାକୁ ବର୍ଣ୍ଣିଳ କରିପାରିନାହିଁ, ହେଲେ ତାଙ୍କ କବିତାରେ ଜୀବନ ଅଛି, ଆଶାବାଦ ଅଛି । ସ୍ୱାଭାବିକ ସୁଖପାଠ୍ୟ ଭାଷାର ସ୍ୱଚ୍ଛତା ମଧ୍ୟରେ କବିଙ୍କ ହୃଦୟ ବେଶ୍ ପରିଷ୍କାର ପଢ଼ିହେଉଛି । ଶ୍ରୀ ମିଶ୍ରଙ୍କ କବିତାଗୁଡିକ ବୁଝିବାପାଇଁ ଅଯଥା ବୌଦ୍ଧିକ କସରତ ଆଦୌ ଆବଶ୍ୟକ ନାହିଁ । ତାଙ୍କ ସୃଷ୍ଟିରେ କେହି କେହି ଅନ୍ୟ ସ୍ରଷ୍ଟାଙ୍କ ଚାପ ଖୋଜନ୍ତି, ହେଲେ ସବୁଥିରେ ତାଙ୍କୁ ମିଳେ ନିଜସ୍ୱ ଶୈଳୀ, ନିଜସ୍ୱ ଅଭିବ୍ୟକ୍ତି; ଯାହାକି କବି ମିଶ୍ରଙ୍କର ଏକାନ୍ତଭାବେ ନିଜସ୍ୱ । ନୂଆ ଚିନ୍ତା; ନୂଆ ଚେତନାର ଆଭାସ ହେଉଛି ତାଙ୍କ ସୃଷ୍ଟିର ଅବିଚ୍ଛେଦ୍ୟ ଅଙ୍ଗ ।

କବି ଦଣ୍ଡପାଣି ମିଶ୍ରଙ୍କର ଏଯାବତ ତିନୋଟି କବିତା ସଙ୍କଳନ ପ୍ରକାଶ ପାଇଛି । ୧୯୫୪ରେ ପ୍ରକାଶିତ 'ଅସ୍ଥିସଞ୍ଚୟନ' ରେ ୧୬ ଟି କବିତା ଓ ୧୯୫୯ରେ ପ୍ରକାଶିତ 'ଚଇତ ବିଜୁଳି'ରେ ୨୧ଟି କବିତା ସଙ୍କଳିତ ହେବା ସହିତ ୧୯୯୯ରେ ପ୍ରକାଶିତ 'ଯେଫୁଲ ମଉଳେ ନାହିଁ' ହେଉଛି ୫୦ ଟି କବିତାର ଏକ ସମ୍ଭ୍ରାନ୍ତ ସଂକଳନ । ଏତଦ୍‌ବ୍ୟତୀତ ତାଙ୍କର 'ମଟକାଡାଳ' ନାମକ ଏକ ଗଳ୍ପ ସଂକଳନ ପ୍ରକାଶ ପାଇଛି । ୧୯୮୧ ରେ ପ୍ରକାଶିତ ଏହି ଗଳ୍ପ ସଙ୍କଳନରେ ଦଶଟି ଗଳ୍ପ ସମାବିଷ୍ଟ ହୋଇଅଛି । ସର୍ବୋପରି 'ମୁଁ ବାବାଜୀ ନୁହେଁ' 'ଇଏ ମୋ ନିଜ ସ୍ତ୍ରୀ' 'ସେ ଅଇଲେ ପଦ୍ମଫୁଟେ' ପ୍ରଭୃତି ସଙ୍କଳନଗୁଡିକ ପ୍ରକାଶ ପତୀକ୍ଷାରେ ରହିଛି ।

## ସାହିତ୍ୟ-ସଂସ୍କୃତି ସଂଗଠନର ସେନା ନାୟକ

କବି ଦଣ୍ଡପାଣି ମିଶ୍ର ଜଣେ ସୃଜନଶୀଳ ସ୍ରଷ୍ଟାର ଭୂମିକା ନିର୍ବାହ କରିବା ସହିତ ସାହିତ୍ୟ ସଂଗଠନ ମାନଙ୍କରେ ସକ୍ରିୟ ଭୂମିକା ଗ୍ରହଣ କରି ସାହିତ୍ୟପ୍ରତି ତାଙ୍କର ଅଙ୍ଗୀକାର ବଦ୍ଧତାର ପରିଚୟ ପ୍ରଦାନ କରିଛନ୍ତି । ସେ ଥିଲେ ଶ୍ରଦ୍ଧାନନ୍ଦ ସାହିତ୍ୟ ପରିଷଦର ପ୍ରତିଷ୍ଠାତା ସଭାପତି, ସେ ଉତ୍କଳ ସାହିତ୍ୟ ସମାଜର ଆଜୀବନ

ସଭ୍ୟ ଥିଲେ । ସେ ସମୟରେ ପ୍ରାୟତଃ ଓଡିଶାର ସମସ୍ତ କଳା, ସଂସ୍କୃତି ଓ ସାହିତ୍ୟ ସଂଗଠନ ଗୁଡିକୁ ସକ୍ରିୟ ସହଯୋଗ କରୁଥିଲେ ଦଣ୍ଡପାଣି । ବିଭିନ୍ନ ସମୟରେ ସେ ଲେଖକ ସାମ୍ମୁଖ୍ୟ, ଗୋଦାବରୀଶ ସାହିତ୍ୟ ସଂସଦ ଓ ବୀର ଓଡିଆ ସାହିତ୍ୟ ପରିଷଦର ସମର୍ପିତ ସଭ୍ୟ ଭାବରେ କାର୍ଯ୍ୟକରି ନିଜର ସାହିତ୍ୟିକ ସଂପୃକ୍ତିକୁ ସୁଦୃଢ଼ କରିପାରିଥିଲେ । ୧୯୪୫ ମସିହାରେ ଲେଖକ ମାନଙ୍କର ଉନ୍ନତି କଳ୍ପେ କଟକଠାରେ ଗଠିତ ହୁଏ ଲେଖକ ସହଯୋଗ ସମିତି ଯାହାକି ଦଣ୍ଡପାଣିଙ୍କ ବଳିଷ୍ଠ ନେତୃତ୍ୱରେ କିଛି ନୂତନ ଦୃଷ୍ଟିଭଙ୍ଗୀ ସମ୍ବଳିତ କାର୍ଯ୍ୟକ୍ରମ ହାତକୁ ନିଏ । ପରବର୍ତ୍ତୀ ସମୟରେ ଏହା ବନ୍ଦ ହୋଇଯିବାରୁ ଭୁବନେଶ୍ୱରଠାରେ ସ୍ଥାପିତ ହୁଏ ଲେଖକ ସମବାୟ ସମିତି, ଯାହାର କି ଦଣ୍ଡପାଣି ହେଉଛନ୍ତି ପ୍ରତିଷ୍ଠାତା ଆଜୀବନ ସଭ୍ୟ, ଓଡିଆ ଭାଷା ସାହିତ୍ୟର ପ୍ରଚାର ଓ ପ୍ରସାର କଳ୍ପେ ସେ ଅବନୀ ନାମକ ସାହିତ୍ୟାନୁଷ୍ଠାନ ମଧ୍ୟ ସ୍ଥାପନ କରିଥିଲେ । ୧୯୬୧ ମସିହାରେ ପ୍ରଥମ ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ଆୟୋଜନରେ ଭାଗନେଇ ସେ ନିଜର ସଂଗଠିନକ ଦକ୍ଷତାର ପରିଚୟ ପ୍ରଦାନ କରିଥିଲେ ।

ଭୁବନେଶ୍ୱରଠାରେ ସ୍ୱର୍ଗତ ଅଖିଳ ମୋହନ ପଟ୍ଟନାୟକ, ଶାନ୍ତନୁ କୁମାର ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ନଗେନ୍ ବେଉରିଆ, ଭଗବାନ ନାୟକ ବର୍ମା ଓ ଦଣ୍ଡପାଣି ମିଶ୍ର ଇତ୍ୟାଦି ପ୍ରଥିତଯଶା ସାହିତ୍ୟିକ ମାନେ 'ଲେଖକ ସାମ୍ମୁଖ୍ୟ' ନାମରେ ସାହିତ୍ୟ ସଂଗଠନଟିଏ ଆରମ୍ଭ କରି ପ୍ରତିମାସରେ ବିଭିନ୍ନ ସାହିତ୍ୟିକ ମାନଙ୍କର ଡ୍ରଇଂ ରୁମ୍‌ରେ ଏକତ୍ରିତ ହୋଇ ସୃଜନଶୀଳ ରଚନା ପାଠ, ଆଲୋଚନା ଆଦି କର୍ମମାନ କରୁଥିଲେ । ଏହାପରେ ଲେଖକ ସାମ୍ମୁଖ୍ୟର ପରିସର ପରିବ୍ୟାପ୍ତ ହୋଇ ରାଜ୍ୟର ଏହା ଏକ ପ୍ରମୁଖ ସାହିତ୍ୟାନୁଷ୍ଠାନର ମାନ୍ୟତା ପ୍ରାପ୍ତ ହେଲା ।

୧୯୯୦ ମସିହାରେ କବି ଦଣ୍ଡପାଣି ମିଶ୍ର ଓଡିଶା ସାହିତ୍ୟ ଅକାଦମୀର ଜେନେରାଲ କାଉନ୍‌ସିଲକୁ ସର୍ବାଧିକ ଭୋଟ ପାଇ ନିର୍ବାଚିତ ହୁଅନ୍ତି । ତିନିବର୍ଷ ପର୍ଯ୍ୟନ୍ତ ସେ କାଉନ୍‌ସିଲର ସଦସ୍ୟ ରହି ଓଡିଆ ସାହିତ୍ୟର ଉନ୍ନତି କଳ୍ପେ ଅନେକ ସୁଚିନ୍ତିତ ପଦକ୍ଷେପମାନ ଗ୍ରହଣ କରନ୍ତି । ୧୯୯୨ ମସିହାରେ ଓଡିଶା ସରକାରଙ୍କର ସଂସ୍କୃତି ବିଭାଗ ଓଡିଶା ସାହିତ୍ୟ ଅକାଦମୀର ମିଳିତ ଆୟୋଜନରେ ଓଡିଶା ବାହାରେ ଓଡିଆ ସାହିତ୍ୟର ପ୍ରସାର ଓ ପ୍ରଚାର ପାଇଁ ପ୍ରଥମ କରି ଦିଲ୍ଲୀଠାରେ ଏକ ସମ୍ମିଳନୀର ଆୟୋଜନ ହୋଇଥିଲା ଯେଉଁଥିରେ କି ଦଣ୍ଡପାଣି ଜଣେ ସଦସ୍ୟ ଭାବରେ ଯୋଗଦାନ କରିଥିଲେ ।

## PEN ସଂପୃକ୍ତି

ଆର୍ନ୍ତଜାତୀୟ ସାହିତ୍ୟ ସଂଗଠନ PEN ର ୧୯୫୧ ମସିହାରୁ ସଭ୍ୟଥିଲେ ଦଣ୍ଡପାଣି । ଏହାପରେ PEN ର ଓଡିଶା ଶାଖା ଦଣ୍ଡପାଣିଙ୍କ ପ୍ରଗାଢ଼ ଉଦ୍ୟମରେ ଗଠିତ ହୁଏ । ଏଥିରେ ସଭାପତି ଭାବରେ ଡଃ ହରେକୃଷ୍ଣ ମହତାବ ଓ ସଂପାଦକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସହ ବହୁ ସାହିତ୍ୟିକ ରହିଥିଲେ । ୧୯୫୮ ମସିହାରେ PEN ରଓଡିଶା ଶାଖା ବିଧିବଦ୍ଧ ଭାବରେ ପଞ୍ଜିକୃତ ହୁଏ । ଏହି ଓଡିଶା ଶାଖା ଡଃ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କର ଅଧ୍ୟକ୍ଷତାରେ ଗଠିତ ହୁଏ । ୧୯୫୯ ମସିହାରେ ଭୁବନେଶ୍ୱର ଠାରେ ଅନୁଷ୍ଠିତ ହୁଏ PEN ର ପଞ୍ଚମ ଅଖିଳ ଭାରତୀୟ ସାହିତ୍ୟିକ ସମ୍ମେଳନ । ଏହି ସମ୍ମେଳନରେ ପଣ୍ଡିତ ଜବାହରଲାଲ ନେହେରୁ ଓ ଡଃ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଭଳି ପ୍ରବାଦ ପୁରୁଷମାନେ ଯୋଗ ଦେଇଥିଲେ । ଏଥିରେ ଭାରତଓ ଭାରତ ବାହାରୁ ସାହିତ୍ୟିକ ମାନେ ଯୋଗଦେଇ ଏକ ବିରଳ ସାହିତ୍ୟିକ ପରିବେଶ ସୃଷ୍ଟି କରିଥିଲେ ।

## ପାଠାଗାର ଆନ୍ଦୋଳନ

ଓଡିଆ ପତ୍ରପତ୍ରିକା ଓ ପୁସ୍ତକ ପ୍ରସାର ସହ ପାଠାଗାର ଆନ୍ଦୋଳନ ପାଇଁ ଅତୀତରେ ଯେଉଁ ଉଦ୍ୟମ ହୋଇଥିଲା, ସେଥିରେ କବି ଦଣ୍ଡପାଣି ମିଶ୍ରଙ୍କ ଭୂମିକା ଅବିସ୍ମରଣୀୟ । ଏହି ପରିପ୍ରେକ୍ଷୀ ଅବନୀ ନାମକ ଏକ ପ୍ରତିଷ୍ଠାନ ଗଠନ କରି ତା ମାଧ୍ୟାମରେ ପତ୍ରପତ୍ରିକାର ପ୍ରସାରଣ ଦିଗରେ ସେ ଯଥୋଚିତ ପଦକ୍ଷେପ ନେଇଇଥିଲେ । ପୁନଶ୍ଚ 'ଅନାମ' ଗୋଷ୍ଠୀର ସହଯୋଗ ତଥା ପ୍ରାକ୍ତନ ଶିକ୍ଷାମନ୍ତ୍ରୀ ଯଦୁନାଥ ପ୍ରସାଦ ଦାସମହାପାତ୍ର ଓ ରାମଚନ୍ଦ୍ର ମିଶ୍ର (ଫତୁରାନନ୍ଦ) ପ୍ରଭୃତିଙ୍କ ପ୍ରେରଣାରେ ଅନୁପ୍ରାରିତ ହୋଇ ସ୍ୱୟଂ ଏକ କାନ୍ଧଝୁଲା ଖଦଡ ବ୍ୟାଗରେ କିଛି ଓଡିଆ ମାସିକ/ପାକ୍ଷିକ ପତ୍ରିକାର ନମୁନା ସଂଖ୍ୟାଧରି ଯାତାୟତ କରିବା ଅବସରରେ ତାହାର ଗୋଟିଏ ଗ୍ରାହକ କରାଇବା; ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ଥିଲା । ସାମ୍ପ୍ରତିକ ଯୁଗରେ ଭଲ ଲେଖକଟିଏ ହେବାକୁ ହେଲେ ପ୍ରଥମେ ଭଲ ପାଠକଟିଏ ହେବା ବାଞ୍ଛନୀୟ । କବି ଦଣ୍ଡପାଣି ମିଶ୍ରଙ୍କୁ କି ଅଫିସ କି ଘର ସବୁବେଳେ ତାଙ୍କୁ କିଛି ପତ୍ରପତ୍ରିକା ଓ ବହିର ଗହଣରେ ଦେଖିବାକୁ ମିଳେ । କେବଳ ସେତିକି ନୁହେଁ ଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ସେ ପ୍ରତ୍ୟହ ଖଣ୍ଡେ ପତ୍ରିକା/ପୁସ୍ତକ କିଣି ପଢ଼ିସାରିବା ପରେ, ତାହାର ପଠନ ସୁଯୋଗ ଅନ୍ୟମାନଙ୍କୁ ଦେବା ଉଦ୍ଦେଶ୍ୟରେ ତାହାକୁ କୌଣସି ଶିକ୍ଷାନୁଷ୍ଠାନ ଅଥବା ପାଠାଗାରକୁ ଦାନ କରିଦେଇ ସାରସ୍ୱତ ଧର୍ମ ସଞ୍ଚୟ କରି

ଆସିଛନ୍ତି । ଓଡିଶାର ପାଠାଗାର ଆନ୍ଦୋଳନରେ ଗୁଣ୍ଡୁଚିମୂଷା ବତ ତାଙ୍କର ସହଯୋଗ ଅଦ୍ୟାବଧି ଅବ୍ୟାହତ ରହଅଛି । ପାଠାଗାର ଆନ୍ଦୋଳନରେ ଛାତ୍ରଜୀବନରୁ ସେ ନିଜକୁ ସାମିଲ କରି ଡଃ ପ୍ରାଣକୃଷ୍ଣ ପରିଜା, ଡଃ ହରେକୃଷ୍ଣ ମହତାବ, ଲକ୍ଷ୍ମୀନାରାୟଣ ସାହୁ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପବିତ୍ର ମୋହନ ପ୍ରଧାନ, ବନମାଳି ପଟ୍ଟନାୟକ ପ୍ରମୁଖ ବହୁ ବିଦ୍ୱାନ ବ୍ୟକ୍ତିବିଶେଷଙ୍କର ସହଯୋଗୀ ହୋଇପାରିଥିଲେ । ଓଡିଶା ତଥା ଓଡିଶା ବାହାରେ ପାଠାଗାର ଆନ୍ଦୋଳନକୁ ଲୋକପ୍ରିୟତା କରିବାରେ ତାଙ୍କ ଉଦ୍ୟମଥିଲା ପ୍ରଶଂସନୀୟ । ତାଙ୍କ ନିଜଅଞ୍ଚଳ ପୂର୍ବତନ ଗଡଜାତ ନୟାଗଡରେ ପ୍ରାଦେଶିକ ପାଠାଗାର ସଂଘର ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥାପିତ ହେବା ଦାବୀରେ ସେ ଜଣେ ସକ୍ରିୟ ଉଦ୍ୟୋକ୍ତା ଥିଲେ । ଉଦୟ ପୁର ନୂଆଗାଁ 'ବାଞ୍ଛାନିଧି ପାଠାଗାର'କୁ ସେ ଅନେକ ପତ୍ରପତ୍ରିକା ଦାନ କରିଦେଇଛନ୍ତି । ଏତଦ୍‌ବ୍ୟତୀତ ଘଟଣାଚକ୍ରରେ ଆନ୍ଧ୍ରପ୍ରଦେଶର ବିଶାଖାପାଟଣାରୁ ଆଗତ ଖ୍ୟାତନାମା ଲେଖକ ଡଃ ପୁରୀପଣ୍ଡା ଆପଲସ୍ୱାମୀଙ୍କ ସାହଚର୍ଯ୍ୟ ଲାଭକରି ତାଙ୍କୁ ଓଡିଆ ସାହିତ୍ୟ ପ୍ରତି ଆକୃଷ୍ଟ କରିପାରିଥିଲେ । ତାଙ୍କ ସହ ଆନ୍ଧ୍ର ଗସ୍ତ କାଳରେ ସେଠାରେ ବସବାସ କରୁଥିବା ପ୍ରବାସୀ ଓଡିଆମାନଙ୍କ ଦ୍ୱାରା ପ୍ରତିଷ୍ଠିତ ପାଠାଗାରକୁ ସେ ନିଜେ କ୍ରୟ କରିଥିବା ଓଡିଆ ବହି ପ୍ରଦାନ କରିଥିଲେ । ଏହି ପାଠାଗାର ଆନ୍ଦୋଳନ ପାଇଁ ସେ ୨୦୦୧ ରେ 'ଚିନ୍ତାଚେତନା' ପ୍ରତିଷ୍ଠାନ ଦ୍ୱାରା ସମ୍ମାନିତ ହେଇଛନ୍ତି ।

## ସଂବାଦିକତା

ଦଣ୍ଡପାଣି କେବଳ ସୃଜନକର୍ମ ଓ ପାଠାଗାର ଆନ୍ଦୋଳନର ଗଣ୍ଡି ଭିତରେ ଆବଦ୍ଧ ନଥିଲେ । ସେ ସଂବାଦିକତାକୁ ନିଜର କର୍ମପ୍ରବାହ ମଧ୍ୟରେ ଏକ ମୂଳସ୍ରୋତ ଭାବରେ ଅଙ୍ଗୀକାର କରିଥିଲେ । ସେ ସମୟରେ ଗଡଜାତି ଶାସନ କାଳରେ ରାଜା ରାଜୁଡାଙ୍କୁ ସୁହାଇଲା ଭଳି ସଂବାଦ ପରିବେଷଣ କରିବାର ପରମ୍ପରା ଥିଲା । ଗଡଜାତ ଅଞ୍ଚଳର ସଂବାଦିକ ଭାବରେ ଦଣ୍ଡପାଣି ଥିଲେ ଏହାର ବ୍ୟତିକ୍ରମ, ପ୍ରାରମ୍ଭିକ ସମୟରେ ସେ ଦୈନିକ ଆଶା ଓ ନବୀନରେ ମୁକ୍ତଛନ୍ଦ ସଂବାଦିକ ଭାବରେ କିଛି ସଂବାଦ ଦେଉଥିଲେ । ୧୯୩୫ ମସିହାରେ ରାଜାଘର ଲୋକେ ଦଣ୍ଡାପାଣିଙ୍କର ନଡା ଯୋର ଜବରଦସ୍ତ ନେଇଯିବାରୁ ସେ ସେହି କଥା ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ଜଣାଇଲେ । ପଣ୍ଡିତ ମିଶ୍ର ସେହି ଘଟଣାକୁ ସମାଜରେ ଏକ ସଂବାଦ ଭାବରେ ପ୍ରକାଶ କରିବା ପରେ ଦଣ୍ଡପାଣି ରାଜାଙ୍କ ର ବିଷଦୃଷ୍ଟିରେ ପଡିଲେ । ରାଜା ଦଣ୍ଡପାଣିଙ୍କର ନନାଙ୍କୁ ଡକେଇ ଏବିଷୟରେ ତାଗିଦ୍ କଲେ ଓ ଦଣ୍ଡପାଣି ସେ

ସମୟରେ ପାଉଥିବା ବୃତ୍ତି ଟଙ୍କାକୁ ବନ୍ଦ୍ କରିଦେବାର ଧମକ ଦେଲେ । କିନ୍ତୁ ସ୍କୁଲ୍ ଇନସପେକ୍ଟର ମେଧାବୀ ଦଣ୍ଡପାଣିଙ୍କ ଉପରେ ଦୟାପରବଶ ହୋଇ ବୃତ୍ତି ଟଙ୍କା ପ୍ରଦାନ କରିଥିଲେ ।

୧୯୪୧ ମସିହାରେ ଅଧୁନାତନ PTI ର ନାମଥିଲା Associated Press ଏବଂ N.R. Swamy ଥିଲେ କଟକ ଅଫିସ୍‌ର ମୁଖ୍ୟ । ଦଣ୍ଡପାଣି ଏହି ସମୟରେ ଆସୋସିଏଟେଡ୍ ପ୍ରେସ୍‌ର ନୟାଗଡ, ଖଣ୍ଡପଡା, ଦଶପଲ୍ଲା ଓ ରଣପୁର ରାଜ୍ୟପାଇଁ ସଂାବାଦିକ ଭାବରେ ନିଯୁକ୍ତ ହୁଅନ୍ତି ।

ଦଣ୍ଡପାଣି ସେ ସମୟରେ ନିଜକୁ କେବଳ ଗୋଟିଏ କାର୍ଯ୍ୟରେ ସୀମିତ ନରଖି ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଦ୍ୱାରା ସଂପାଦିତ ଦୈନିକ ନବଭାରତ, ଲୋକମତ ଓ କୃଷକ ସମେତ ଓଡିଶାରୁ ପ୍ରକାଶିତ ସମସ୍ତ ଦୈନିକ ଓ ସାପ୍ତାହିକରେ ଗଳ୍ପ, ସଂବାଦ, କବିତା ଓ ଫିଚର ଇତ୍ୟାଦି ପ୍ରକାଶ କରିଥିଲେ ।

୧୯୪୧ ମସିହାରେ ଦଣ୍ଡପାଣି ନୟାଗଡରୁ ନିଜସ୍ୱ ସଂପାଦନାରେ ପ୍ରକାଶ କରନ୍ତି ସାପ୍ତାହିକ ସଂବାଦ ପତ୍ର ଦେଶବାର୍ତ୍ତା ।

## ଧରିତ୍ରୀ ସଂପର୍କ ଓ କର୍ମ ଜୀବନ

କର୍ମମୟ ଜବୀନରୁ ଅବସର ନେବାପରେ ୧୯୭୫ ମସିହାରୁ ଆଜି ପର୍ଯ୍ୟନ୍ତ ଦଣ୍ଡପାଣି ଦୈନିକ ସଂବାଦପତ୍ର ଧରିତ୍ରୀର ପ୍ରକାଶକ ଭାବରେ କାର୍ଯ୍ୟ କରୁଛନ୍ତି ବୟସ ପ୍ରତିହତ କରିପାରି ନାହିଁ ତାଙ୍କର ବେଗ ଓ ଗତିକୁ । ଧରିତ୍ରୀର ପ୍ରକାଶକ ଥାଇ ସେ ଏହି ଦୈନିକର ଉନ୍ନତି କଳ୍ପେ ବହୁ ସୁଚିନ୍ତିତ ପଦକ୍ଷେପ ନେଇଛନ୍ତି । ସମଗ୍ର ଓଡିଶାରେ ଏହି ସଂବାଦ ପତ୍ରର ପ୍ରଚାର ଓ ପ୍ରସାର ପାଇଁ ସେ ବହୁ ନିଷ୍ଠାପର ଉଦ୍ୟମମାନ କରିଛନ୍ତି । ୧୯୭୭ ମସିହାରେ ଧରିତ୍ରୀକୁ ବନ୍ଦ କରିଦେବା ପାଇଁ ଏକ ଚକ୍ରାନ୍ତ ହୁଏ । ଭିଜିଲାନ୍‌ସ ପୋଲିସ୍ ଧରିତ୍ରୀ କାର୍ଯ୍ୟାଳୟ ଉପରେ ଚଢ଼ାଉ କରି ଯେତେବେଳେ ସମସ୍ତ ସଂପତ୍ତି ଜବତ କଲେ ଦଣ୍ଡପାଣି ସେତେବେଳ ନିର୍ଭିକ ଭାବରେ ସବୁ କିଛି ସାମ୍ନାକରି ଧରିତ୍ରୀ ପ୍ରକାଶନକୁ ଅବ୍ୟାହତ ରଖି ପାରିଥିଲେ । ଏପରିକି ଧରିତ୍ରୀର ଚରମ ଦୁର୍ଦ୍ଦିନରେ ମଧ୍ୟ ଏହାର ପ୍ରକାଶନ ଦିନକ ପାଇଁ ବନ୍ଦ ହୋଇନଥିଲା ।

## ଦଣ୍ଡପାଣିଙ୍କ ଚାକିରୀ

୧୯୪୮ ମସିହାରେ ଦଣ୍ଡପାଣି ଓଡିଶା ସରକାରଙ୍କର ଲୋକ ସଂପର୍କ ବିଭାଗରେ Assistant Publicity Officer ଭାବରେ ଯୋଗ ଦିଅନ୍ତି । ଏହାପରେ ସେ Assistant District Welfare Officer, District

Welfare officer ଭାବରେ କାର୍ଯ୍ୟକରି ସେ Special Officer, Tribal Welfare ଭାବରେ ୧୯୭୫ ମସିହାରେ ଚାକିରୀରୁ ଅବସର ଗ୍ରହଣ କଲେ ଓ ପରେ ପରେ ଧରିତ୍ରୀ ସଂବାଦ ପତ୍ରରେ ଅବସ୍ଥାପିତ ହେଲେ ।

## ଜାତୀୟ ଆନ୍ଦୋଳନର ମହାଘୂର୍ଣ୍ଣି ମଧ୍ୟରେ

ଗାନ୍ଧିଜୀଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଦଣ୍ଡପାଣି ଜାତୀୟ ଆନ୍ଦୋଳନରେ ମଧ୍ୟ ଝାସ ଦେଇଥିଲେ । ପ୍ରଜାମଣ୍ଡଳ ଆନ୍ଦୋଳନର ସେ ଜଣେ ନିଷ୍ଠାପର କର୍ମୀ ହରିଜନ ଆନ୍ଦୋଳନ, ହିନ୍ଦୀ ପ୍ରସାର ଆନ୍ଦୋଳନ ଆଦିରେ ସେ ଯେଉଁ ନିଷ୍ଠାପର ଭୂମିକା ନିର୍ବାହ କରିଛନ୍ତି ସତରେ ତାହା ପ୍ରଣିଧାନ ଯୋଗ୍ୟ । ୧୯୩୯ରେ ଦଣ୍ଡପାଣି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଦର୍ଶନ ଲାଭ କରିଥିଲେ ।

## ପାନ ବର୍ଜନ ଆନ୍ଦୋଳନ

ଦଣ୍ଡପାଣି ଥିଲେ ନୟାଗଡ ରାଜାଙ୍କର ଜଣେ ପ୍ରଜା । ନୟାଗଡ ରାଜା ଏକ ବିଚିତ୍ର ବ୍ୟବସ୍ଥା ଭାବରେ ପାନ ଉପରେ କର ବସେଇଲେ । ନୟାଗଡ ରାଜ୍ୟ ବାହାରେ ପଇସାରେ ପାନ ଚାରିଟା ଥିବାବେଳେ ନୟାଗଡ ମଧ୍ୟରେ ଗୋଟିଏ ପାନକୁ ଦୁଇ ପଇସା ମୂଲ୍ୟ ଧାର୍ଯ୍ୟ ହୋଇଥିଲା । ରାଜାଙ୍କୁ ଜଣେ ପାନ ବ୍ୟବସାୟୀ ଦଶହଜାର ଟଙ୍କା ସଲାମୀ ଲୋଭ ଦେଖାଇ ପାନ ବ୍ୟବସାୟକୁ ଏକ ଚାଟିଆ କରିନେଲା । ପାନଖିଆ ଲୋକଙ୍କ ପାଇଁ ଏହାଥିଲା ଏକ କଷ୍ଟଦାୟକ ନିୟମ । ଦଣ୍ଡପାଣି ପାନବର୍ଜନ ଆନ୍ଦୋଳନରେ ଭାଗନେଇଥିଲେ । ହେଲେ ରାଜା ପ୍ରଜାମଣ୍ଡଳ କଥାରେ ଆଦୌ କର୍ଣ୍ଣପାତ ନକରି ଆଇନ୍‌କୁ ବଦଳାଇଲେ ନାହିଁ । ଆନ୍ଦୋଳନ ତେଜି ଉଠିଲା ପ୍ରାୟ ତିନି ଚତୁର୍ଥାଂଶ ପାନୁଆ ଲୋକ ପାନବର୍ଜନ କଲେ । ଫଳତଃ ପାନବିକ୍ରି ସଂପୂର୍ଣ୍ଣ ବନ୍ଦ ହେବାକୁ ବସିଲା । ପାନ ବ୍ୟବସାୟୀ ରାଜାଙ୍କୁ ପ୍ରତିଶ୍ରୁତି ମୁତାବକ ଦଶହଜାର ଟଙ୍କା ଦେବାକୁ ଅକ୍ଷମ ହେଲା । ରାଜା କ୍ରୁଧିତ ହୋଇ ଆନ୍ଦୋଳନ କରୁଥିବା ନେତା ଭରତ ନାୟକ, ନାରାୟଣ ନନ୍ଦ ଓ ରାମକୃଷ୍ଣ ଅଧିକାରୀ ପ୍ରମୁଖଙ୍କୁ ଜେଲ୍ ଦଣ୍ଡରେ ଦଣ୍ଡିତ କଲେ । ସେହି ନେତାମାନଙ୍କର ଅବର୍ତ୍ତମାନରେ ଅନ୍ଦୋଳନକୁ ଚାଲୁ ରଖିଲେ ଦଣ୍ଡପାଣି । କାରାରୁଦ୍ଧ ଆନ୍ଦୋଳନକାରୀମାନେ ଯେଉଁ ଦିନ ଜେଲ୍‌ରୁ ଖଲାସ ହେଲେ ସେମାନଙ୍କୁ ସଂବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଲଡୁବାବାଙ୍କ ପୀଠରେ ଏକ ସଂବର୍ଦ୍ଧନା ସଭାର ଆୟୋଜନ କରାଗଲା । ହେଲେ ରାଜାଙ୍କ ଭୟରେ କୌଣସି ଢୋଲିଆ ଢୋଲ ବଜାଇବାକୁ ଆସିଲେ ନାହିଁ । ଦଣ୍ଡପାଣି ନିଜେ ଚରମ ଉଲ୍ଲାସରେ

ଢ଼ୋଲ ବାଦନ କରିଥିଲେ । ଏହି ଘଟଣା ଯୋଗୁଁ ତାଙ୍କୁ ସାମାଜିକ-ବାଛନ୍ଦ ହେବାକୁ ପଡିଥିଲା । ଗଡଜାତ ରାଜ୍ୟର ପ୍ରଜା ହୋଇବି ସେ ନିର୍ଭିକ ଭାବରେ ଜାତୀୟ ଆନ୍ଦୋଳନର ନେତା ମାନଙ୍କ ସହିତ ସଂପର୍କ ରକ୍ଷା କରି ନିଷିଦ୍ଧ ଥିବା ସଭା ସମ୍ମେଳନ ମାନ ଅନୁଷ୍ଠିତ କରାଇଥିଲେ ।

### ସମାଜସେବା :

ସମାଜ ସେବା ବିଶେଷତଃ ନାରୀକଲ୍ୟାଣ କ୍ଷେତ୍ରରେ ଦଣ୍ଡପାଣି ମିଶ୍ରଙ୍କର ବୈପ୍ଲବିକ ସଂସ୍କାର ବେଶ୍ ଉଲ୍ଲେଖ-ଯୋଗ୍ୟ । ପୂର୍ବେ ବାଲ୍ୟ ବିବାହ ପ୍ରଥା ପ୍ରଚଳନ ଯୋଗୁଁ ସମାଜରେ କୁମାରୀ କନ୍ୟାମାନେ ବୟଃପ୍ରାପ୍ତି ପୂର୍ବରୁ ସ୍ୱାମୀର ମୁଖାବଲୋକନ ନକରି ମଧ୍ୟ ଅଧିକାଂଶ ବାଲ୍ୟବିଧବା ରୂପେ ସାରାଜୀବନ ନାନା ଦୁଃଖକଷ୍ଟ, ନିର୍ଯାତନା ତଥା ଅନ୍ତର୍ଦାହ ମଧ୍ୟରେ ଜୀବନଯନ୍ତ୍ରଣା ଭୋଗୁଥିଲେ । ଦରଦୀ ଦଣ୍ଡପାଣି ମିଶ୍ରଙ୍କ ମାନସ ପଟରେ ସମାଜର ଏହି କୁସଂସ୍କାର ଗଭୀର ରେଖାପାତ କରିଥିଲା । ସଂସାରକୁ ଭଲକରି ଚହ୍ନି/ବୁଝି ନଥିବା ବାଳ ବିଧବାମାନଙ୍କର ଦୟନୀୟ ଅବସ୍ଥା ଦେଖି ସେ ବାଲ୍ୟବିବାହ ପ୍ରଥାର ଉଚ୍ଛେଦ ନିମିତ୍ତ ସ୍ୱରୋତ୍ତୋଳନ କରିଥିଲେ । ବିଶେଷତଃ ପଣ୍ଡିତ ନୀଳକଂଠ ଦାସଙ୍କ ସହ ପ୍ରତ୍ୟକ୍ଷ ଆଲୋଚନା କରି ବିଧବା ମାନଙ୍କ ମଧ୍ୟରୁ କେତେକଙ୍କୁ 'ବିବରା' ନାମକ ଏକ ନୂତନ ସଂଜ୍ଞାରେ ସଂଜ୍ଞାୟିତ କରିଥିଲେ । ତାଙ୍କର ଯୁକ୍ତି ଥିଲା ଯେଉଁ ବିବାହିତାମାନେ ସ୍ୱାମୀସୁଖଲାଭ କରିବା ପରେ ଦୁର୍ଭାଗ୍ୟବଶତଃ ସେମାନଙ୍କ ମଥାର ସିନ୍ଦୂର ଅକାଳରେ ଲିଭିଯାଉଥିଲା; ସେମାନେ ଯଥାର୍ଥରେ ବିଧବା ପଦବାଚ୍ୟ ଅଟନ୍ତି । ମାତ୍ର ଯେଉଁ ଅପ୍ରାପ୍ତ ବୟସ୍କା ବିବାହିତାମାନେ ବିବାହ/ସ୍ୱାମୀସଙ୍ଗ କଅଣ ବୁଝିବା ପୂର୍ବରୁ ସେମାନଙ୍କ 'ବର' ମୃତ୍ୟୁ କବଳିତ ହେଉଥିଲା; ସେହି ହତଭାଗିନୀମାନଙ୍କୁ ବିଧବା ନକହି 'ବିବରା' କହିବା ଅଧିକ ପ୍ରାସଙ୍ଗିକ ଅଟେ । ବିଧବା ବିବାହକୁ ବିରୋଧ କରୁଥିବା ତତ୍କାଳୀନ ସମାଜ ବ୍ୟବସ୍ଥାରେ ଯୁଗାନ୍ତକାରୀ ସଂସ୍କାର ଆଣି ଏହି 'ବିବରା' ଶବ୍ଦକୁ ଅଧିକ ଲୋକପ୍ରିୟ କରିବା ସହିତ ୰ବିଜୁପଟ୍ଟନାୟକଙ୍କ ପିତୃବ୍ୟ ଭାଗୀରଥୀ ପଟ୍ଟନାୟକଙ୍କ ସହ ମିଶି 'ବିବରା ବିବାହ' ପ୍ରଚଳନ ପାଇଁ ଆନ୍ଦୋଳନ କରି ଜନମତ ଗଢ଼ିତୋଳିଥିଲେ । ତତ୍କାଳୀନ ନୟାଗଡର ରାଜା, ରାଜପୁରୋହିତ ତଥା ରକ୍ଷଣଶୀଳ ସମାଜପତିମାନଙ୍କର ଦୃଢ଼ ପ୍ରତିରୋଧ ସତ୍ତ୍ୱେ ଅନେକ କର୍ମୀଙ୍କ ସହଯୋଗରେ ସେ ବିବରା ବିବାହ ଆନ୍ଦୋଳନକୁ ବାସ୍ତବରୂପ ଦେଇଥିଲେ ।

ଦଣ୍ଡପାଣି ଥିଲେ ଏକ ନମନୀୟ ହୃଦୟର ଅଧିକାରୀ । ଦୁର୍ଗତ ମାନଙ୍କର ଦୁଃଖକୁ ସେ ସହଜରେ ସହ୍ୟ କରିପାରୁ ନଥିଲେ । ପିଲାଟି ଦିନରୁ ସେ ସମାଜ ସେବାରେ ବ୍ରତୀଥିଲେ । ଘରପୋଡି ବିପ୍ନଙ୍କୁ ସାହାଯ୍ୟ, ପୋଖରୀତୁଠ ସଫା, ଯାନି ଯାତ୍ରାରେ ଜଳଛତ୍ର ସ୍ଥାପନ, ଅସହାୟ ଗରୀବ ଲୋକମାନଙ୍କୁ ଚିକିତ୍ସା ବ୍ୟବସ୍ଥାରେ ସହଯୋଗ, ଅପାଠୁଆ ଲୋକଙ୍କ ପାଇଁ ଚିଠି ଲେଖାଳୀର କର୍ମ ଏବଂ ଧନୀ ଲୋକଙ୍କ ଠାରୁ ଅର୍ଥ ଆଦାୟ କରି ଗରୀବ ଲୋକଙ୍କୁ ବିତରଣ କରିବାର ଯେଉଁ ମହାନ ସେବାକାର୍ଯ୍ୟ ତାହାକୁ ଜୀବନସାରା ଅଙ୍ଗୀକାର କରିଛନ୍ତି ଦଣ୍ଡପାଣି ।

ପୁରି ସେବା ସଂଘର ପୁରୋଧା ସ୍ୱର୍ଗତ ତ୍ରିପାଠୀଙ୍କର ସେ ଥିଲେ ଭଣଜା । ରଥଯାତ୍ରାରେ ପୁରୀ ସେବା ସଂଘ ବହୁ ସେବା ମୂଳକ କାର୍ଯ୍ୟ କରୁଥିଲା । ଦଣ୍ଡପାଣି ଏହି ପୁରୀ ସେବା ସଂଘର କର୍ମ ପ୍ରବାହରେ ନିଜକୁ ସାମିଲ୍ କରି ରଥ ଯାତ୍ରା ମାନଙ୍କରେ ବହୁ ସେବା କାର୍ଯ୍ୟ କରିଥିଲେ ।

## ସଂପର୍କର ସେତୁ

ଦଣ୍ଡପାଣି ତାଙ୍କ ଜୀବନ କାଳ ମଧ୍ୟରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ସାନିଧ୍ୟ ଲାଭ କରିବାରେ ସକ୍ଷମ ହୋଇଛନ୍ତି । ସେ ବିଭିନ୍ନ ସମୟରେ ପଣ୍ଡିତ ଜବାହରଲାଲ୍ ନେହେରୁ, ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ୍, ଆଚାର୍ଯ୍ୟ ବିନୋବା ଭାବେ, ଦଲାଇଲାମା, ମାଲତୀ ଦେବୀ ଓ ନବକୃଷ୍ଣ ଚୌଧୁରୀ, ଶାରଙ୍ଗଧର ଦାସ ଆଦି ମହାନବ୍ୟିକ୍ତିତ୍ୱ ମାନଙ୍କର ସଂସ୍ପର୍ଶରେ ଆସିବାର ଭାଗ୍ୟ ଲାଭ କରିଥିଲେ ।

## ନିରାଡମ୍ବର ଜୀବନ ପରିଧିରେ

ସର୍ବଦା Plain Living and high Thinking ରେ ବିଶ୍ୱାସ କରୁଥିଲେ ଦଣ୍ଡପାଣି । ଏତେ ବଡ ପଦ ପଦବୀରେ ରହି ଓଡିଶାର ତିନି ତିନି ଜଣ ମୁଖ୍ୟମନ୍ତ୍ରୀଙ୍କ ସହିତ ଅନାବିଳ ସଂପର୍କ ରଖିଥିବା ଦଣ୍ଡପାଣି ଭୁବନେଶ୍ୱରରେ ଏକ ଛୋଟ ଘର ବ୍ୟତୀତ ଜୀବନରେ ଆଉ କିଛି ଧନ ସଂପତ୍ତିର ଅଧିକାରୀ ହୋଇ ପାରି ନାହାଁନ୍ତି । ଦଣ୍ଡପାଣି ସର୍ବଦା କର୍ମକୁ ପ୍ରାଧାନ୍ୟ ଦେଇ ଆସିଥିବାରୁ ବସ୍ତୁବାଦୀ ଚିନ୍ତାଧାରା ତାଙ୍କୁ କବଳିତ କରିପାରି ନାହିଁ । ଅର୍ଦ୍ଧାଙ୍ଗିନୀଙ୍କର ପ୍ରେରଣା ଓ ସହଯୋଗ ଦଣ୍ଡପାଣିଙ୍କୁ ବହୁ ଆଗକୁ ଯିବାରେ ସହାୟ ହୋଇଛି । ତାଙ୍କର ପ୍ରେମ ଓ ପ୍ରେରଣା ଦଣ୍ଡପାଣିଙ୍କୁ କରିଛି ଏକ ସ୍ୱୟଂ ସଂପୂର୍ଣ୍ଣ ମାନବୀୟ ଅବତାର, ଏକ ସୃଜନ ମନସ୍କ ଶିଳ୍ପୀ ଏକ ସମର୍ପିତ ସମାଜ ସେବକ ଓ ସର୍ବୋପରି ଏକ ବିରଳ ବ୍ୟକ୍ତିତ୍ୱ । ଦଣ୍ଡପାଣି ତାଙ୍କ

ଜୀବଦଶାରେ କେବେ ପାନ, ବିଡି, ସିଗାରେଟ ଭଳି ନିଶା ଦ୍ରବ୍ୟର ପାଖ ମାଡି ନଥିଲେ ।

ଶ୍ରୀଯୁକ୍ତ ଦଣ୍ଡପାଣି ମିଶ୍ରଙ୍କ ସମ୍ପର୍କରେ : ଦୈନିକ ସମ୍ବାଦ ପତ୍ର 'ଧରିତ୍ରୀ'ର ପ୍ରକାଶକ ରୂପେ କାର୍ଯ୍ୟ କରି ଆସୁଛନ୍ତି । ଏଥିପାଇଁ ଧରିତ୍ରୀର ସମ୍ପାଦକ ଶ୍ରୀଯୁକ୍ତ ତଥାଗତ ଶତପଥୀଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ''As the publisher and printer of Dharitri, since the late 70's Dandapani Babu has always stood as as rock. His contribution for Dharitri, that the paper did not go unpublished even for a day.'' ଏହି ଯଶସ୍ୱୀ ସମ୍ବାଦିକଙ୍କୁ ୧୯୮୮ 'ରଘୁନାଥ ବଡଜେନା ସ୍ମୃତି ସଂସଦ', ୧୯୯୧ରେ 'ଉତ୍କଳ ସମାଚାର ସର୍ଭିସ୍', ୧୯୯୨ରେ 'ପ୍ରତିଭା ସାହିତ୍ୟ ସଂସଦ', ୧୯୯୩ରେ 'ଓଡିଶା କର୍ମଜୀବୀ ସାମ୍ବାଦିକ ୟୁନିୟନ', ୨୦୦୨ରେ ରାଷ୍ଟ୍ରିୟ ସାମ୍ବାଦିକ କଲ୍ୟାଣ ପରିଷଦ' ତରଫରୁ ନିର୍ଭିକ ତଥା ସୁସ୍ଥ ସାମ୍ବାଦିକତା ପାଇଁ ସମ୍ମାନିତ କରାଯାଇଛି ।

ଏକାଧାରାରେ ମହାନ ବିପ୍ଳବୀ, ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ସୁସାହିତ୍ୟିକ, ନିର୍ଭିକ ସାମ୍ବାଦିକ କିମ୍ବଦନ୍ତୀ ପୁରୁଷ ସର୍ବୋପରି ପ୍ରଳୟ ଓ ପ୍ରଣୟର କବି ଦଣ୍ଡପାଣି ମିଶ୍ର ତାଙ୍କର ବହୁବିଧ ପ୍ରତିଭା ଲାଗି ଆଜି ଓଡିଶରେ ସର୍ବତ୍ର ସୁପରିଚିତ । ସମସ୍ତଙ୍କୁ ଖୋଲା ହୃଦୟରେ ବିଶାଶହେ ବର୍ଷ ବଞ୍ଚିବାର ଆଶୀର୍ବାଦ ବାଣ୍ଟୁଥିବା ଏହି ଋଷିତୁଲ୍ୟ ସ୍ନେହବତ୍ସଳ ପ୍ରତିଭାଙ୍କର ଆଗାମୀ ଅନେକ ଜୟନ୍ତୀ କାମନା କରୁଛୁ ।

ନୂଆଗାଁ, ଇତିପୁର, ଭୁବନେଶ୍ୱର-୨

ଦୂରଭାଷ-୨୩୪୧୬୮୩



# ଝୁମର ସଂଗୀତର ପ୍ରାଣ ପ୍ରତିଷ୍ଠାତା ପ୍ରଫୁଲ୍ଲ କୁମାର ସିଂହଦେଓ

*● ଗୌର ପଟ୍ଟନାୟକ*

ମୟୁରଭଂଜ ଉତ୍ତର ଓଡିଶାର ଏକ ଆଦିବାସୀ ବହୁଳ ସୀମାନ୍ତ ଜିଲ୍ଲା । ଏହାର ଉତ୍ତର ସୀମାକୁ ବିହାର ଏବଂ ପଶ୍ଚିମବଙ୍ଗ ଲାଗି ରହିଛି । ମୟୁରଭଂଜର ଭାଷା, ସାହିତ୍ୟ, ନୃତ୍ୟ, ସଂଗୀତ ଏବଂ ସଂସ୍କୃତିରେ କେବଳ ଓଡିଶା ନୁହେଁ ପଶ୍ଚିମବଙ୍ଗ ଏବଂ ବିହାର ରାଜ୍ୟର ପ୍ରଭାବ ମଧ୍ୟ ସୁସ୍ପଷ୍ଟ । ତେଣୁ ମୟୁର ଭଂଜର ଲୋକ ଭାଷାରେ ହିନ୍ଦୀ ଏବଂ ବଙ୍ଗଳା ଭାଷାର କିଛିଟା ପ୍ରଭାବ ଜଣାପଡେ । ମୟୁରଭଂଜର ଲୋକ ଗୀତ ଝୁମରରେ ମଧ୍ୟ ଏହି ପ୍ରଭାବ ପରିଲକ୍ଷିତ ହୁଏ । ବଣ ପାହାଡ ଘେରା ମୟୁରଭଂଜ ଜିଲ୍ଲାର ଆଦିମ ଅଧିବାସୀ ମାନଙ୍କ ମଧ୍ୟରେ ସୀମିତ ଥିବା ଏହି ଲୋକଗୀତ ଝୁମରକୁ ନିଜସ୍ୱ ଶୈଳୀରେ ଏକ ନୂଆରୂପ ଦେବାରେ ଯେଉଁ କେତେ ଜଣ ଶିଳ୍ପୀ ଏବଂ ଗବେଷକ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି ସେମାନଙ୍କ ମଧ୍ୟରେ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ ଦେଓ ଅଗ୍ରଗଣ୍ୟ । ଆକାଶବାଣୀ ଏବଂ ଦୂରଦର୍ଶନ ଛଡା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରି, ଓଡିଶା ଏବଂ ଓଡିଶା ବାହାରେ ଝୁମର ଗୀତ ପରିବେଷଣ କରି ଏହି ସଂଗୀତକୁ ଲୋକ ପ୍ରିୟ କରିବା ପାଇଁ ସେ ବହୁ ଉଦ୍ୟମ କରିଛନ୍ତି । ନିଜେ ଝୁମର ଗୀତ ରଚନା କରି, ସ୍ୱର ଦେଇ, ନିଜେ ଗାଇ ଏବଂ ଛାତ୍ର ଛାତ୍ରୀ ମାନଙ୍କୁ ଶିକ୍ଷା ଦେଇ ମଳିନ ପଡିଯାଇଥିବା ଏହି ସଂଗୀତକୁ ସେ ପୁନର ଜୀବନ ଦେଇ ପାରିଛନ୍ତି । ତାଙ୍କରି ଉଦ୍ୟମ ଫଳରେ ମୟୂରଭଂଜ ରାଜାଙ୍କର ପୃଷ୍ଠ ପୋଷକତା ଲାଭ କରି ଝୁମର ସଂଗୀତ ଆଜି ଏକ ଲୋକ ପ୍ରିୟ ଲୋକ ସଂଗୀତ ଭାବରେ ପ୍ରତିଷ୍ଠା ଅର୍ଜନ କରି ପାରିଛି ।

ଏହି ମହାନ କଣ୍ଠ ଶିଳ୍ପୀ, ନୀରବ ସାଧକ ତାଙ୍କର ନିଷ୍ଠା ଏବଂ ତ୍ୟାଗ ପାଇଁ ସଫଳତାର ଶୀର୍ଷରେ ପହଞ୍ଚି ପାରିଛନ୍ତି । ନିଜ ପେଷା ବ୍ୟବସାୟକୁ ପଛରେ ପକେଇ ନିନ୍ଦା ପ୍ରଶଂସାକୁ ଭ୍ରୁକ୍ଷେପ ନକରି ବହୁ ଅର୍ଥ ବ୍ୟୟକରି ଝୁମରର ଉନ୍ନତି ପାଇଁ ସେ

ସାରା ଜୀବନ ଉତ୍ସର୍ଗ କରି ଦେଇଛନ୍ତି । ଏବଂ ଏହାରି ଭିତରେ ନିଜକୁ ହଜେଇ ଦେଇଛନ୍ତି । ଏଇଥିରୁ ହିଁ ସେ ଲାଭ କରିଛନ୍ତି ଅପାର ଆନନ୍ଦ । ଏହି ଅପ୍ରତିଦ୍ୱନ୍ଦୀ ଶିଳ୍ପୀ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ ଦେଓଙ୍କ ଜୀବନୀ ଯେତିକି ରୋମାଞ୍ଚକର ସେତିକି ପ୍ରେରଣା ଦାୟକ । ବାଲ୍ୟଜୀବନ ପ୍ରାଚୁର୍ଯ୍ୟ ଭିତରେ କଟିଥିଲେ ମଧ୍ୟ ପରେ ବହୁ ଉତ୍‌ଥାନ ପତନ ଘାତ ପ୍ରତିଘାତ ଦେଇ ଗତି କରିଛି । ତଥାପି ସେ କେବେବି ବିଚଳିତ ନ ହୋଇ ହସି ହସି ପରିସ୍ଥିତିର ସାମନା କରିଛନ୍ତି । ଜଣେ ଆଦର୍ଶ ବ୍ୟକ୍ତି ଏବଂ ସଂଗୀତ ଗୁରୁ ଭାବରେ ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ସଂପାଦନ କରିଛନ୍ତି । ଅର୍ଥ କିମ୍ବା ସମ୍ମାନ ପାଇଁ ସେ କେବେବି ନିଜର ସ୍ୱାଭିମାନକୁ ବଳି ଦେଇ ନାହାଁନ୍ତି ।

ପୂର୍ବତନ ବିହାର ପ୍ରଦେଶ ଏବଂ ବର୍ତ୍ତମାନର ଝାଡଖଣ୍ଡ ରାଜ୍ୟର ସଢ଼େଇକଳା ଖରସୁଆଁ ଜିଲ୍ଲା ଅନ୍ତର୍ଗତ ଖରସୁଆଁ ରାଇଡିହିଗଡ ରାଜ ପରିବାରରେ ୧୯୨୫ ମସିହା ଅକ୍ଟୋବର ୨୩ ତାରିଖରେ ତାଙ୍କର ଜନ୍ମ । ଜମିଦାର ପିତା ଗିରୀଶ ଚନ୍ଦ୍ର ସିଂହ ଦେଓ ଏବଂ ମାତା ଅଂଜନା କୁମାରୀ ଦେବୀଙ୍କର ଅଷ୍ଟମ ଏବଂ କନିଷ୍ଠ ପୁତ୍ର ହୋଇଥିବାରୁ ସେ ବେଶ୍ ଅଲିଅଳିରେ ବଢ଼ିଥିଲେ । ରାଇଡିହିରେ ପ୍ରାଥମିକ ଶିକ୍ଷା ସମାପ୍ତ କରି କେନ୍ଦୁଝରର ଗିବ୍‌ସନ୍ ହାଇସ୍କୁଲରେ ଏମ୍. ଇ. ଶ୍ରେଣୀରେ ନାମ ଲେଖାଇ ଥିଲେ ତାପରେ ଚାଇଁବସାର ଜିଲ୍ଲା ହାଇସ୍କୁଲରୁ ମାଟ୍ରିକ ପାଶ୍ କରିଥିଲେ । ତାପରେ କଲିକତାର ସେଣ୍ଟପଲ୍‌ସ୍ କଲେଜରେ ନାମ ଲେଖାଇ ଥିଲେ । ସେଠାରେ ଆଇ.ଏ.ସି. ପଢୁଥିଲା ବେଳେ କଲିକତାରେ ସାମ୍ପ୍ରଦାୟିକ ଦଂଗା ବିସ୍ଫୋରକ ଆକାର ଧାରଣ କରିବାରୁ ତାଙ୍କ ବଡ ଭାଇ ରଘୁନଂଦନ ତାଙ୍କୁ ରାଞ୍ଚି ପଠାଇ ଦେଇଥିଲେ । ସେଠି ସେ ସେଣ୍ଟଜାଭିୟର୍ସ କଲେଜରେ ଆଇ.ଏ. ସି ପଢ଼ିଲେ । ପାଠ ପଢ଼ା ସଙ୍ଗେ ସଙ୍ଗେ ସଙ୍ଗୀତ, ବିଶେଷ କରି ପଲ୍ଲୀ ଏବଂ ଝୁମର ଗୀତ ପ୍ରତି ତାଙ୍କର ଆଗ୍ରହ ବଢ଼ିଲା । ଗୀତ ଗାଇବା ପାଇଁ ପ୍ରେରଣା ଏବଂ ସୁଯୋଗ ମିଳିଲା । ଯଦିଓ ସେ କୌଣସି ଗୁରୁଙ୍କ ପାଖରୁ ବିଧିବଦ୍ଧ ଭାବରେ ସଂଗୀତ ଶିକ୍ଷା କରି ନଥିଲେ ତଥାପି ଶୁଣି ଅଭ୍ୟାସ କରି ଝୁମର ଶିଳ୍ପୀ ଭାବରେ ପାରଦର୍ଶିତା ଲାଭ କରି ପାରିଥିଲେ । ନିଷ୍ଠା, ସାଧନା ଫଳରେ ତାଙ୍କର ସ୍ୱପ୍ନ ସଫଳ ହୋଇଥିଲା ।

ତାଙ୍କର ସାନ ଭିଣେଇ ଗୌରେନ୍ଦ୍ର ପ୍ରତାପ ସିଂହ ଦେଓ (ଢେଙ୍କାନାଳ ରାଜା ଶ୍ରୀ କାମାକ୍ଷ୍ୟା ପ୍ରସାଦ ସିଂହ ଦେଓଙ୍କ କାକା) Great Eastern Movietone Production ନାମରେ ଏକ କମ୍ପାନୀ ପ୍ରତିଷ୍ଠା କରି ଓଡିଆ ଚଳଚିତ୍ର 'ଲଳିତା' ପ୍ରଯୋଜନା କଲେ । ଏହି ଚଳଚିତ୍ରରେ ଗୀତ ଲେଖିଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏବଂ ସ୍ୱର ସଂଯୋଜନା କରିଥିଲେ । ଗୌର ଗୋସ୍ୱାମୀ

ଏବଂ ସୁରେନ୍ ପାଲ । ଏହି ଚଳଚିତ୍ରରେ ତିନୋଟିଗୀତ ଯଥା (୧) ନୀଳମାଧବ ଲବେ ଦୟା ନାହିଁକି (୨) ଚାଲରେ ପଥୁକୀ ଘନବନ୍ଧୁର ପଥେ (୩) ନୀଳ ମାଧବ ଜଗନ୍ନାଥ ଜଗବନ୍ଦନ ଗାଇବା ପାଇଁ ଶ୍ରୀ ସିଂହ ଦେଓଙ୍କୁ ସୁଯୋଗ ମିଳିଲା । କେବଳ ସେତିକି ନୁହେ ସେହି ଚଳଚିତ୍ରରେ ଅଭିନୟ କରିବାର ସୁଯୋଗ ମଧ୍ୟ ମିଳିଲା । ୧୯୪୮-୪୯ ମସିହାରେ ଚଳଚିତ୍ରଟି ମୁକ୍ତିଲାଭ କରିବାପରେ ଶିଳ୍ପୀ ଶ୍ରୀସିଂହ ଦେଓଙ୍କ ପ୍ରତିଭାର ପରିଚୟ ମିଳିଲା । ଯଥେଷ୍ଟ ପ୍ରଶଂସା ସହିତ ପ୍ରେରଣା ମଧ୍ୟ ମିଳିଲା । ସେହି ପ୍ରଯୋଜକ, ନିର୍ଦ୍ଦେଶକ ଏବଂ ସଂଗୀତ ନିର୍ଦ୍ଦେଶକଙ୍କ ଦ୍ୱାରା ପରେ ପରେ ନିର୍ମିତ ହେଲା 'ସପ୍ତଶଯ୍ୟା' ଏବଂ Rolls 2-8, ସେଥିରେ ମଧ୍ୟ ଶ୍ରୀ ସିଂହ ଦେଓଙ୍କୁ ଗୀତ ଗାଇବା ପାଇଁ ସୁଯୋଗ ମିଳିଲା । ତାଙ୍କର କଣ୍ଠ ସ୍ୱରରେ ମୁଗ୍ଧ ହୋଇ କବିଚନ୍ଦ୍ର କାଳୀଚରଣ ନଟ୍ଟନାୟକ ଆକାଶବାଣୀ କଟକ କେନ୍ଦ୍ରରେ କଣ୍ଠପରୀକ୍ଷା ଦେବାପାଇଁ ପରାମର୍ଶ ଦେଲେ । ଶ୍ରୀ ସିଂହ ଦେଓ କଣ୍ଠ ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲେ । ୧୯୫୦ ମସିହା ମାର୍ଚ୍ଚ ଆଠ ତାରିଖ ଦିନ ଆକାଶବାଣୀ କଟକ କେନ୍ଦ୍ରରୁ ତାଙ୍କର ପ୍ରଥମ ଗୀତ ପ୍ରଚାରିତ ହେଲ । ସେତେବେଳେ ଆଜି ଭଳି ରେକର୍ଡିଂ ହେଉନଥିଲା । ସିଧାସଳଖ (Live Broadcast) ପ୍ରଚାର ହେଉଥିଲା । ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ରଚିତ ଆଧୁନିକ ଗୀତ- 'ଆଜି, ସନ୍ଧ୍ୟା ଗଗନେ ଯେବେ ଉଇଁବ ସେଦିନ ତାରା' ପ୍ରଚାରିତ ହେଲା ଏବଂ ଶ୍ରୋତାମାନଙ୍କ ପାଖରୁ ଭୁରି ଭୁରି ପ୍ରଶଂସା ମିଳିଲା । ପ୍ରସିଦ୍ଧି ଗାୟକ ବାଲକୃଷ୍ଣ ଦାଶ ଏ ଗୀତ ଶୁଣି ଅତ୍ୟନ୍ତ ପ୍ରିତ ହୋଇ ସଂଗୀତ ଶିକ୍ଷା ଦେବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଶ୍ରୀ ସିଂହ ଦେଓ ଗୁରୁ ବାଲକୃଷ୍ଣ ଦାଶଙ୍କ ଠାରୁ ଆଧୁନିକ ଏବଂ ଭଜନ ଶିକ୍ଷା କଲେ । ଦିନେ ବାଲକୃଷ୍ଣ ବାବୁ ତାଙ୍କ ଛାତ୍ରଠାରୁ ଝୁମର ଗୀତ ଶୁଣି ଏତେ ଖୁସି ହେଇଗଲେ ଯେ ପଲ୍ଲୀଗୀତ ଭାବରେ ସେହି ଗୀତ ଗୁଡିକୁ ରେଡିଓରେ ଗାଇବା ପାଇଁ ପରାମର୍ଶ ହେଲେ । ତାଙ୍କରି ପ୍ରେରଣାଲାଭ କରି ଶ୍ରୀ ସିଂହଦେଓ ଆକାଶବାଣୀରେ ପଲ୍ଲୀଗୀତ ଭାବରେ ସର୍ବପ୍ରଥମେ ଝୁମର ଗୀତ ପରିବେଷଣ କଲେ ଏବଂ ଏହି ଗୀତ ଶ୍ରୋତାଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେଲା । ଏହାର ବହୁ ଦିନ ପରେ ଶେଷରେ 'ଝୁମର' ଏକ ସ୍ୱତନ୍ତ୍ର ଲୋକଗୀତର ସମ୍ମାନ ଲାଭ କଲା ।

ମୟୁରଭଂଜର ତତ୍କାଳିନ ମହାରାଜା ପ୍ରତାପ ଚନ୍ଦ୍ର ଭଂଜ ଦେଓଙ୍କ କକାପୁଅ ଭାଇ ଲାଲ ସାହେବ ଶରତ ଚନ୍ଦ୍ର ଭଂଜଦେଓଙ୍କୁ ପ୍ରଫୁଲ୍ଲ ଚନ୍ଦ୍ର ଭଂଜଦେଓଙ୍କ ବଡ ଭଉଣୀ ପ୍ରସନ୍ନ ମଂଜରୀ ବିବାହ କରି ବାରିପଦାର ଶଂଖ ପଟାରେ ରହୁଥିଲେ ।

ଶରନ ଚନ୍ଦ୍ରଙ୍କ ବଡପୁଅ ପ୍ରମୋଦ ଚନ୍ଦ୍ର ଭଂଜ ଦେଓ ଥିଲେ ପ୍ରଫୁଲ୍ଲ କୁମାର ସିଂହଦେଓଙ୍କ ସମବୟସ୍କ । ମାମୁଁ ଭଣଜାଙ୍କ ମଧ୍ୟରେ ଗଢ଼ି ଉଠିଥିଲା ଆନ୍ତରୀକତା ଏବଂ ନିବିଡ ବନ୍ଧୁତା । ମାମୁ ଭଣଜା ମିଶି ବାରିପଦାରେ ଆରମ୍ଭ କଲେ ସିନେମା ହଲ ପରିଚାଳନା ୧୯୫୨ ମସିହାରେ K.M.B.M. Talkies ନାମରେ ପ୍ରଥମ ସିନେମା ହଲ ଆରମ୍ଭ ହେଲା ବାରିପଦାରେ । ୧୯୫୨ ମସିହା ପର୍ଯ୍ୟନ୍ତ ପ୍ରଫୁଲ୍ଲ ବାବୁ ରହୁଥିଲେ କଲକତାରେ । ସିନେମାହଲ ପରିଚାଳନା ପାଇଁ ଏଥର ତାଙ୍କୁ ବାରିପଦାରେ ସ୍ଥାୟୀ ଭାବରେ ରହିବାକୁ ହେଲା । ସେହି ବାରିପଦାରେ ହିଁ ତାଙ୍କର ସାଂସ୍କୃତିକ ଜୀବନ ପରିପୁଷ୍ଟ ହେଇଥିଲା । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗନେବା ଫଳରେ ବେଶ୍ ସୁନାମ ମିଳିଲା । ଆକାଶବାଣୀ, ଦୂରଦର୍ଶନ ଛଡା ବହୁ କ୍ୟାସେଟରେ ସେ କଣ୍ଠ ଦାନ କଲେ ଏବଂ ଗୀତ ଗୁଡିକ ବେଶ ଆଦୃତ ହେଲା ।

୧୯୬୪ରେ ବାରିପଦାରେ ଠିକାଦାର କାର୍ଯ୍ୟ ଆରମ୍ଭ କଲେ ପ୍ରଫୁଲ୍ଲ ବାବୁ । ୧୯୬୫ରେ ଲାଲ ସାହେବ ପ୍ରମୋଦ ଚନ୍ଦ୍ର ଭଂଜ ଦେଓ ଏବଂ ଅନ୍ୟ ଅଂଶିଦାର ମାନଙ୍କ ସହିତ ମିଶି ବାରିପଦାରେ Roxy Cinema hall ଆରମ୍ଭ କଲେ । ବ୍ୟବସାୟରେ ଲିପ୍ତ ରହିଥିଲେ ମଧ୍ୟ ସଂଗୀତ ଥିଲା ତାଙ୍କର ଜୀବନ । ସଂଗୀତ ଅଭ୍ୟାସ ଏବଂ ଚର୍ଚ୍ଚା ପାଇଁ ସମୟ ବାହାର କରୁଥିଲେ । ପାରିବାରୀକ ଜୀବନରେ ଏହି ସଂଗୀତ କୌଣସି ପ୍ରତିବନ୍ଧକ ସୃଷ୍ଟି କରିନଥିଲା ବରଂ ସାରା ପରିବାର ତାଙ୍କୁ ଏ ଦିଗରେ ସାହାଯ୍ୟ ସହଯୋଗ କରୁଥିଲେ ।

ଶ୍ରୀ ସିଂହ ଦେଓ ବହୁ ନୂତନ ପ୍ରତିଭାଙ୍କୁ ସଂଗୀତ ଶିକ୍ଷା ଦେଇ ଲୋକ ଲୋଚନକୁ ଆଣିଛନ୍ତି । ତାଙ୍କର ବହୁ ଛାତ୍ର ଛାତ୍ରୀ ଆଜି ଆକାଶବାଣୀ କେନ୍ଦ୍ରର ଜଣେ ଜଣେ ପ୍ରତିଭାଧର ସଫଳ ଝୁମର ଶିଳ୍ପୀ ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ରୀତି ମହାନ୍ତି, ମନୋଜ ଦାସ ଏବଂ ଅର୍ଘ୍ୟରୂପା ମହାନ୍ତି ପ୍ରମୁଖ । ତାଙ୍କର ଦୁଇ ପୁତ୍ର ପ୍ରବୀର ଏବଂ ସବୀର ମଧ୍ୟ ଝୁମର ଗାୟକ ଭାବରେ ପ୍ରତିଭାର ଅଧିକାରୀ ହୋଇପାରିଛନ୍ତି ।

୧୯୭୭ ମସିହାରେ ନୂଆ ଦିଲ୍ଲୀରେ ଅନୁଷ୍ଠିତ ଏକ୍ସପୋ ଫେଷ୍ଟିଭାଲରେ ସେ ଓଡିଶାର ପ୍ରତିନିଧିତ୍ୱ କରିଥିଲେ, ତାଛଡା ୧୯୮୮ରେ ଦିଲ୍ଲୀର ସାଂସ୍କୃତିକ ସମାରୋହରେ ଏବଂ ୧୯୯୯ରେ ମଧ୍ୟ ପ୍ରଦେଶର ଭୋପାଳ ଠାରେ ପଲ୍ଲୀ ନୃତ୍ୟ ସଂଗୀତ ସମ୍ମୀଳନୀରେ ଅଂଶଗ୍ରହଣ କରି ଝୁମର ସଂଗୀତକୁ ସର୍ବ ଭାରତୀୟ ସ୍ତରରେ ପହଞ୍ଚାଇ ଲୋକ ପ୍ରିୟ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ସରଳ

ନିରାଡମ୍ବର ଜୀବନ, ଭଦ୍ର ନମ୍ର ବ୍ୟବହାର ସମୟାନୁ ବର୍ତ୍ତିତା ଏବଂ କର୍ତ୍ତବ୍ୟ ନିଷ୍ଠା ପାଇଁ ସେ ସମସ୍ତଙ୍କର ପ୍ରିୟପାତ୍ର । ତାଙ୍କ ନିକଟରୁ କେହି କେବେ ଖାଲି ହାତରେ ଫେରିବାର ଉଦାହରଣ ନାହିଁ । ଏହି ବିରଳ ପ୍ରତିଭାର ଅଧିକାରୀ ଜଣକ ମୟୁର ଭଂଜରେ ଆଦରଣୀୟ ମାମା ସାହେବ ନାମରେ ସୁପରିଚିତ ।

ଲୋକଗୀତ ଝୁମରକୁ ସଭ୍ୟ ସମାଜରେ ଆଦୃତ କରାଇବା ଦିଗରେ ତାଙ୍କର ସଫଳ ଉଦ୍ୟମ ପାଇଁ ୧୯୮୩ ମସିହାରେ ଓଡିଶା ସଂଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ମାନିତ କରିଛନ୍ତି । ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟର ସଂସ୍କୃତି ବିଭାଗ ୧୯୯୮ ମସିହାରେ ଝୁମର ସଂଗୀତ ସଂପର୍କରେ ଗବେଷଣା ପାଇଁ ସିନିୟର ଫେଲୋସିପ ପ୍ରଦାନ କରିଛନ୍ତି । ଏହାଛଡା ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ଏବଂ ପୁରସ୍କୃତ ହୋଇଛନ୍ତି । ଏ ଉତୀର୍ଣ୍ଣ ବୟସରେ ମଧ୍ୟ ସେ କର୍ମଚଞ୍ଚଳ । ଏବେ ମଧ୍ୟ ସେ ଶିଳ୍ପୀ ମାନଙ୍କୁ ସଂଗୀତ ଶିକ୍ଷା ଦେଉଛନ୍ତି । ନୂଆ ଝୁମର ଗୀତର ସ୍ୱର ସଂଯୋଜନା କରୁଛନ୍ତି । ପୁରାତନ ଝୁମର ଗୀତ ଗୁଡିକୁ ଗାଇ ଅପୂର୍ବ ଆନନ୍ଦ ଅନୁଭବ କରୁଛନ୍ତି । ସେଥିପାଇଁ ବୟସ ଏବଂ ରୋଗ ତାଙ୍କ ପାଖରେ ହାର ମାନି ଯାଇଛି । ଯେତେ ଦିନ ପର୍ଯ୍ୟନ୍ତ ଝୁମର ଗୀତ ଥିବ ସେତେ ଦିନ ପର୍ଯ୍ୟନ୍ତ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ ଦେଓ ସଂଗୀତ ପ୍ରେମୀଙ୍କ ହୃଦୟରେ ବଂଚି ରହିଥିବ ଏଥିରେ ସନ୍ଦେହ ନାହିଁ ।

ଅଲିଶା ବଜାର, କଟକ-୨



# ଅନନ୍ୟ ଅଭିନେତା ବିଜୟ ମହାନ୍ତି

● ସୁବ୍ରତ ପ୍ରିୟବ୍ରତ ମହାନ୍ତି

ଦୁଇପଟେ ଶାନ୍ତ ସବୁଜିମା ଲହଡି ଭାଙ୍ଗୁଛି ମଝିରେ ଅଙ୍କା ବଙ୍କା ଗାଁ ରାସ୍ତାଟିଏ ସାପଭଳିଲମ୍ବିଯାଇଛି । ଛୋଟ ଶିଶୁଟିଏ ଜେଜେମାର ପଣତ କାନି ଧରି ଧାଇଁ ଧାଇଁ ଚାଲିଛି । ବେଳେ ବେଳେ ଅଟକି ଯାଇ ଆଖି ଉପରେ କୁନି ହାତଟିକୁ ଥାପିଦେଇ ଅନାଇ ଦେଉଛି ଦୂର ଦିଗ୍‌ବଳୟ ଆଡେ । ସତେ ଯେମିତି ଅଧିକରୁ ଅଧିକ ସୁନ୍ଦରତାକୁ ଦୃଷ୍ଟିର ପରିସୀମା ଭିତରକୁ ଆଣିବାକୁ ଚେଷ୍ଟା କରୁଛି । କୋଳକୁ ଉଠାଇ ନେଲେ ବୁଢ଼ିମା' ସେଇ ଛୋଟ ପିଲାଟିକୁ, ଜାଣିଛୁ ! ଦିନେ ଏ ସବୁକିଛି ଆମର ଥିଲା, ଆମେ ଥିଲେ ଏ ଅଞ୍ଚଳର ଜମିଦାର । ହେଲେ ଆଜି..... । ଜମି-ଜମିଦାରୀ ଏ ସବୁର ଅର୍ଥ ବୁଝିବାର ବୟସ ହୋଇ ନଥିଲା ଛୋଟ ପିଲାଟିର । ତା' ଆଖିରେ କେବଳ କ୍ଷେତଟାହିଁ ଥିଲା ସୁନ୍ଦର । ଏଠୁ ଫେରିଲେ ସାଙ୍ଗ ମାନଙ୍କ ସହିତ ଗୁଲିଦଣ୍ଡା ଖେଳିବା ବଡ ମାନଙ୍କର ବାଗୁଡି ଖେଳ ଦେଖିବା ଭାରି ମଜା । ସବୁଠାରୁ ମଜା ଲାଗୁଥିଲା ଅମୁହାଁ ବସ୍ ପଛରେ ଦୌଡିବା, ବସ୍‌ରତ ଦେହ ଠାରୁ ମୁହଁଟା ଟିକେ ଆଗକୁ ବାହାରିଥାଏ, ଏ ମୁହଁ ନଥିବା ବସ୍ ଆସିଲା କେଉଁଠୁ । ନୂଆହେଇ ଚାଲୁ ଥିବା ବସ୍‌ଟା ପଛେ ପଛେ ପିଲାଟି ଦୌଡିଥିଲା ନିଜ ଗାଁ ପାଖରୁ ତିନିମୁହାଁଣି ପର୍ଯ୍ୟନ୍ତ । ପାଖାପାଖି ତିନି କିଲୋମିଟର ହେବ କେବଳ ଏକ ଖିଆଲି ମନ ନେଇ । ସେହି ଖିଆଲି ମନର ରାଜା ଆଉ କେହି ନୁହେଁ । ଆଜିର ସୁପ୍ରସିଦ୍ଧ ଚଳଚିତ୍ର ଅଭିନେତା ବିଜୟମହାନ୍ତି ଆଉ ସେ ଦିନର ଶିଶୁ ରାଜା ।

ବିଜୟ ମହାନ୍ତିଙ୍କ ଜନ୍ମ ହୋଇଥିଲା ୧୯୫୦ ମସିହା ଏପ୍ରିଲ୍ ମାସ ୮ ତାରିଖ ଦିନ (ସାର୍ଟିଫିକେଟରେ ୧୯୪୯) କେନ୍ଦ୍ରାପଡା ନିକଟସ୍ଥ ପାଣ୍ଡିରି ଗ୍ରାମରେ । ଜେଜେ ତାଙ୍କର ଥିଲେ ଦୁଇ ଭାଇ ରଘୁନାଥ ମହାନ୍ତି, କେଶବ ମହାନ୍ତି । କେଶବ ମହାନ୍ତିଙ୍କର ଥିଲେ ଦୁଇ ପୁଅ ବିନୋଦ ମହାନ୍ତି ଏବଂ ଆଦିକନ୍ଦ ମହାନ୍ତି । ବେଶ୍ କିଛି ବଡ ଜମିଦାର ଘର, କିନ୍ତୁ ଅନେକ କିଛି ବଦଳି ଯାଇଥିଲା ସମୟର ଚକରେ । ସଂସାରର

ସବୁକିଛି ପରିବର୍ତ୍ତନ ଶୀଳ ସେହି ପରିବର୍ତ୍ତନ ଭିତର ଦେଇ ଜମିଦାରୀ ସରି ସରି ଆସୁଥିବାବେଳେ ଚଣ୍ଡୀ ସାଧନା କରୁ କରୁ ବିନୋଦ ମହାନ୍ତି ହୋଇଥିଲେ ପାଗଳ । ଅନେକ ଅର୍ଥ ଖର୍ଚ୍ଚ ହୋଇଥିଲା । ପ୍ରାୟ ସବୁକିଛି ସରି ଆସିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଲାଭ କିଛି ହୋଇ ନଥିଲା । ପରେ ବଡବାପାଙ୍କ ପୁଅଭାଇ ଚାଲିଯାଇଥିଲେ ଅନ୍ୟତ୍ର, ଆଦିକନ୍ଦ ମହାନ୍ତି ଚାଲି ଯାଇଥିଲେ ବାରିପଦା ଚାକିରୀରେ ଯୋଗଦେବା ପାଇଁ, ସାଙ୍ଗରେ ନେଇ ଯାଇଥିଲେ ସ୍ତ୍ରୀ ଶାନ୍ତିଲତା, ଦୁଇପୁଅ ବିଜୟ ଏବଂ ଅଜୟ ତିନି ଝିଅ ସୁଶୋଭିତା, ସ୍ୱର୍ଣ୍ଣଲତା ଏବଂ ସୁଜାତାଙ୍କୁ । ଫଳତଃ କେନ୍ଦ୍ରାପଡା ନିକଟ ଗୁଲନଗର ଠାରେ ଦ୍ୱିତୀୟ ଶ୍ରେଣୀରେ ପଢୁଥିବା ବିଜୟ ସେ ସ୍କୁଲ ଛାଡି ଚାଲିଗଲେ ବାରିପଦା । ମଝିରେ କିଛି ବର୍ଷ ଘରେ ରହି ପାଠ ପଢିବା ପରେ ଏକା ଥରେ ପଞ୍ଚମ ଶ୍ରେଣୀରେ ନାମ ଲେଖାଇଲେ ବାରିପଦା M.K.C ସ୍କୁଲରେ । ସେହି ସ୍କୁଲ ବେଳର କଥା । ସାମଲ ସାର ନୃସିଂହ ସାର୍ ଏମାନେ ଖୁବ୍ ଭଲ ପାଉଥିଲେ ବିଜୟଙ୍କୁ । ଥରେ ସେମାନେ ବାଧ୍ୟ କଲେ ସ୍କୁଲର ବାର୍ଷିକ ଉତ୍ସବରେ ଏକ ନାଟକରେ ଅଭିନୟ କରିବାକୁ । ପ୍ରଥମେ ପ୍ରଥମେ ବିଜୟ ମନା କରୁଥିଲେ । ଯାହାହେଉ, ପରେ କିନ୍ତୁ ରାଜି ହୋଇଗଲେ ଅଭିନୟ କରିବାକୁ । ତାଙ୍କର ଅଭିନୟର ଏକ ଅଂଶଥିଲା ମଞ୍ଚ ଉପରକୁ ଗାମୁଛାଟିଏ ପିନ୍ଧି ଦୌଡିଯାଇ ନିଜର ଅଭିନୟର ଆରମ୍ଭ କରିବେ । ନାଟକ ଚାଲିଥାଏ ବିଜୟ ଗାମୁଛା ପିନ୍ଧି ଦୌଡିଗଲେ ମଞ୍ଚ ଉପରକୁ । ମଞ୍ଚ ଉପରେ ପଡିଯିବାର ଦୃଶ୍ୟ, ସବୁ କିଛି ଠିକ୍ ହେଲା, ହେଲେ ଉଠି ଠିଆହେବା ବେଳକୁ ଦେହରେ ଗାମୁଛା ନଥିଲା । ବଡ ଅପ୍ରିତୀକର ପରିସ୍ଥିତି । ମଞ୍ଚ ପରିଚାଳକ ବାଧ୍ୟ ହେଲେ ଲାଇଟ୍ ଲିଭାଇବାକୁ । ସେହି ଅନ୍ଧାର ଭିତରେ ବିଜୟ ଦୌଡିଲେ ଘରକୁ । ସେତେବେଳେ ବିଜୟ ଥିଲେ ୧୦ ଶ୍ରେଣୀର ଛାତ୍ର ବେଶ୍ ବଡ ପିଲା ଲାଜ ମାଡିବା ସ୍ୱାଭାବିକ୍ । ତାଛଡା ସ୍କୁଲ୍ ଯିବା ମାତ୍ରେ ବସିବ ବେତ ପାହାର ଏ ଭୟରେ ବିଜୟ ପ୍ରାୟ ୨ ମାସ ଧରି ସ୍କୁଲ୍ ଗଲେ ନାହିଁ । ହଠାତ୍ ଦିନେ ସ୍କୁଲ ଶିକ୍ଷକ ଦେଖା ହେଇଗଲେ ବିଜୟଙ୍କର, କିରେ ସ୍କୁଲ ଆସୁ ନାହୁଁ କାହିଁକି ? ବିଜୟ ପ୍ରକାଶ କଲେ ନିଜର ସ୍କୁଲ ନଯିବାର କାରଣ । ଶିକ୍ଷକ କିନ୍ତୁ କହିଲେ ଓଲଟା- ଆରେ ସେଟା ଆମର ଭୁଲ୍ ଆମେ ତତେ ଗାମୁଛା ପିନ୍ଧାଇ ଷ୍ଟେଜକୁ ପଠାଇଲୁ । ଯାହା ହେଉ ତାପରେ ପୁଣି ଆରମ୍ଭ ହେଲା ବିଜୟଙ୍କ ସ୍କୁଲ ଯିବା । ୬୯-୬୯ ମସିହାରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ବାପା ବାପା ଆଦିକନ୍ଦ ମହାନ୍ତି ଚାକିରି କରୁଥାନ୍ତି ଟ୍ରାନ୍ସପୋର୍ଟ ଡିପାର୍ଟମେଣ୍ଟରେ । ଘରର ଆର୍ଥିକ ଅବସ୍ଥା ଏତେ ଭଲ ନଥାଏ । ତେଣୁ

ବିଜୟ ସ୍ଥିର କଲେ ନିଜେ ଚାକିରି କରି ପାଠ ପଢ଼ିବେ । ସେହି ଟ୍ରାନ୍ସପୋର୍ଟ ଡିପାର୍ଟମେଣ୍ଟରେ କିରାଣୀ ଚାକିରି କରିବା ସହିତ ବିଜୟ କଲେଜ ପଢ଼ା ଆରମ୍ଭ କଲେ M.P.C. Neight College ରେ । ଏହି କଲେଜ ପଢ଼ିବା ବେଳେ ହିଁ ବିଜୟଙ୍କର କଳାକାର ଜୀବନର ଅଭ୍ୟୁଦୟ ଘଟିଲା । ପ୍ରଥମ ବର୍ଷ ସେ କଲେଜ ଡ୍ରାମାରେ ଭାଗନେବା ପରେ ପୁରସ୍କୃତ ହୋଇଥିଲେ ଶ୍ରେଷ୍ଠ କଳାକାର ଭାବେ । ଏଇଠି ନିଜ ଭିତରେ ଥିବା କଳା ପ୍ରତିଭାର ସତ୍ତାକୁ ଖୋଜି ପାଇଥିଲେ ବିଜୟ- ମୋ ଭିତରେ ପ୍ରତିଭା ରହିଛି ସାଧନା କଲେ ନିଶ୍ଚୟ ଆଗକୁ ଯିବି । ଏ ଏକ ନିଶା, ଏ ନିଶା ଥରେ ଯାହାକୁ ଘାରେ ସେଥିରୁ ମୁକୁଳିବା ବଡ଼ କଷ୍ଟ । ବିଜୟଙ୍କୁ ନାଟକ ନିଶା ଘାରିବା ପରେ ଗୋଟିଏ ପରେ ଗୋଟିଏ ମଞ୍ଚ ନାଟକରେ ଅଭିନୟ କରି ଚାଲିଲେ ସେ । ସେତିକିରେ କିନ୍ତୁ ତାଙ୍କ ମନ ବୁଝିଲା ନାହିଁ । ସାଙ୍ଗମାନଙ୍କୁ ଏକାଠି କରି ଆରମ୍ଭ କଲେ ଏକ ନାଟ୍ୟସଂସ୍ଥା "ଯୁଗେଚ୍ଛା" । ଏହି ନାଟ୍ୟ ସଂସ୍ଥା ଗଢ଼ିବାରେ ଯେଉଁ କେତେଜଣ ବିଜୟଙ୍କୁ ବେଶ୍ ସାହାଯ୍ୟ କରିଥିଲେ । ସେମାନଙ୍କ ମଧ୍ୟରେ ବିଜୟଙ୍କର ସବୁଠୁ ଅନ୍ତରଙ୍ଗ ଥିଲେ ସେବାନନ୍ଦ ଦେବ । ସେବାନନ୍ଦ ହିଁ ତାଙ୍କୁ ସବୁଠାରୁ ଅଧିକ ପ୍ରେରଣା ଯୋଗାଉଥିଲେ ଏ ଦିଗରେ କାମ କରିବା ପାଇଁ । ସେହି ଯୁଗେଚ୍ଛା ନାଟ୍ୟ ସଂସ୍ଥା ମାଧ୍ୟମରେ ହିଁ ଇତିହାସ ସୃଷ୍ଟି ଆରମ୍ଭ ହେଲା । ଗୋଟିଏ ବର୍ଷରେ ଯୁଗେଚ୍ଛା ମଞ୍ଚସ୍ଥ କଲା ୧୧ଟି ନାଟକ । ଏ ନାଟକ ଗୁଡିକ ପାଇଁ ସମସ୍ତ ପ୍ରକାରର ଆୟୋଜନ କରିବା ସହିତ ପ୍ରତ୍ୟେକ ନାଟକରେ ଅଭିନୟ କରିଥିଲେ ବିଜୟ ମହାନ୍ତି, ଲୋକଙ୍କର ଭୁରି ଭୁରି ପ୍ରଶଂସା ନିଜର କଳାକାର ହେବାର ଇଚ୍ଛାଶକ୍ତିକୁ ବହୁ ଗୁଣିତ କରି ଚାଲିଥାଏ । ଏମିତି ଏମିତି ଇଣ୍ଟର ମିଡିଏଟ୍ ସରିଗଲା । ଆରମ୍ଭ ହେଲା B.A ପଢ଼ା । ଘରେ ବିଜୟଙ୍କର ନାଟକ ନିଶାକୁ ଏତେ ବେଶୀ ସମର୍ଥନ ମିଳୁନଥାଏ । ଏତିକି ବେଳେ ପ୍ରସନ୍ନ ମହାନ୍ତିଙ୍କ ସାହାଯ୍ୟରେ ସେ ଆବେଦନ କଲେ ନ୍ୟାସ୍‌ନାଲ୍ ସ୍କୁଲ ଅଫ୍ ଡ୍ରାମାରେ ପଢିବା ପାଇଁ । ଇଣ୍ଟରଭ୍ୟୁ ପାଇଁ ଡାକରା ଆସିଲା । ଇଣ୍ଟରଭ୍ୟୁରେ ବିଜୟ ସଫଳ ମଧ୍ୟ ହେଲେ । ସେତେବେଳକୁ ବି.ଏ ଶେଷ ବର୍ଷ, କେଉଁ ବାପା ମାଆ ରାଜିହେବେ ପରୀକ୍ଷା ଛାଡିଯିବା ପାଇଁ । ବିଜୟଙ୍କର କିନ୍ତୁ ଏକା ଜିଦ୍ ସେ ଦିଲ୍ଲୀଯିବେ । ଶେଷରେ ସେଇଆ ହେଲା । ଚାକିରୀ, ପାଠ ଏବଂ ବାରିପଦା ଛାଡି ବିଜୟ ଚାଲିଲେ ଦିଲ୍ଲୀ ।

ରଙ୍ଗ ବେରଙ୍ଗର ସହର ଦିଲ୍ଲୀ । ଗୋଡ ଖସି ଯିବାର ବହୁ ସମ୍ଭାବନା । ବିଜୟ କିନ୍ତୁ ଥିଲେ ଭାରି ସତର୍କ । ମୁଁ ମଣିଷ ହେବାକୁ ଆସିଛି ଅମଣିଷ ହେବିନାହିଁ ।

ସେଥିପାଇଁ ଦୀର୍ଘ ତିନିବର୍ଷର ଦିଲ୍ଲୀ ରହଣୀ ମଧ୍ୟରେ କେବଳ ନିଜ ହଷ୍ଟେଲ ଶିକ୍ଷାନୁଷ୍ଠାନ ପରିସର ବ୍ୟତୀତ ଅନ୍ୟ କେଉଁ ଆଡେ ଯାଇ ନଥିଲେ । ''ନ୍ୟାସନାଲ୍ ସ୍କୁଲ ଅଫ୍ ଡ୍ରାମାରେ ପାଠ ପଢ଼ିବା ବେଳେ ବିଜୟଙ୍କର ସହପାଠୀଥିଲେ ଭାରତର ସୁପ୍ରସିଦ୍ଧ ଅଭିନେତା ନାଶିରଦ୍ଦିନ୍ ସାହା ଏବଂ ଓମ୍‌ପୁରୀ । ସେମାନେ ମଧ୍ୟ ବିଜୟଙ୍କର ଅଭିନୟ ପ୍ରତିଭା ଦେଖି ଭୂରି ଭୂରି ପ୍ରଶଂସା ଅଜାଡି ଦେଇଥିଲେ । ସମୟ କ୍ରମେ ବିଜୟ ଜାତୀୟ ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହେଲେ । ଏତେ ବେଶୀ ଆର୍ଥିକ ଅସୁବିଧା ରହିଲା ନାହିଁ । ଚାହୁଁ ଚାହୁଁ ତିନୋଟି ବର୍ଷ ବିତିଗଲା । କୃତୀତ୍ୱର ସହ ସମସ୍ତ ପାଠ୍ୟକ୍ରମ ଶେଷ କରିଥିଲେ ବିଜୟ । ଦିଲ୍ଲୀ ସହରକୁ ବିଦାୟ ଦେବାକୁ ପଡିଲା ଫେରି ଆସିଲେ ସେ ବାରିପଦା । ବାରିପଦା ଫେରିଆସିବା ପରେ ମଧ୍ୟ ଯୋଗାଯୋଗ ଥାଏ ଦିଲ୍ଲୀର ପୁରୁଣା ବନ୍ଧୁମାନଙ୍କ ସହିତ । ନାଶିରଦ୍ଦିନ୍ ଶାହା ଏବଂ ଓମ୍‌ପୁରୀ ଚାଲିଯାଇଥାନ୍ତି ବମ୍ବେ । ଚେଷ୍ଟା କରୁଥାନ୍ତି ହିନ୍ଦି ଚଳଚ୍ଚିତ୍ର ଜଗତରେ ପ୍ରବେଶ କରିବା ପାଇଁ । ସେମାନେ ବାଧ୍ୟ କରୁଥାନ୍ତି ବିଜୟଙ୍କୁ ବମ୍ବେ ପଳାଇ ଆସିବା ପାଇଁ । ବିଜୟଙ୍କ ପାଇଁ କିନ୍ତୁ ଓଡିଶା ମାଟିର ଆକର୍ଷଣ ଥିଲା ସବୁଠୁ ଅଧିକ । ସେ କୁହନ୍ତି- ହୁଏତ ମୁଁ ବମ୍ବେ ଚାଲିଯାଇଥିଲେ ଖୁବ ବଡ କଳାକାର ହୋଇପାରିଥାନ୍ତି କିନ୍ତୁ ତା ଏ ମାଟିର ଆକର୍ଷଣ ଜାବୁଡି ଧରିଲା । ଏଇଠି ରହି କିଛି କରିବାର ପ୍ରଚେଷ୍ଟା ଆରମ୍ଭ ହେଲା । ବିଜୟ କଟକରେ ଆସି ପହଞ୍ଚିଲେ ଜଣେ ପ୍ରଯୋଜକଙ୍କ ନିକଟରେ । ନିଜର ଇଚ୍ଛା ପ୍ରକାଶ କଲେ, ମୁଁ ଦିଲ୍ଲୀ ରୁ ନାଟକ ପାଠ ପଢ଼ି ଫେରିଛି ଆପଣଙ୍କ ଚିତ୍ରରେ ସୁଯୋଗ ଟା ଚାହୁଁଛି । ପ୍ରଯୋଜକ ଜଣକ ଉତ୍ତର ଦେଲେ ସୁଯୋଗ ମିଳିବ କିନ୍ତୁ ତା ପାଇଁ ଅର୍ଥ ଦେବାକୁ ପଡିବ । ଟଙ୍କା ! ହତ୍‌ବାକ୍ ହୋଇ ଅନାଇଲେ ବିଜୟ । ମୁଁ ପାଠଶାଠ ପଢ଼ି ଫେରିଛି କାମ କରିବାକୁ .........ସେଥିପାଇଁ ମୋର ଟଙ୍କା ପାଇବା କଥା ମୁଁ ଟଙ୍କା ଦେବି । ଟଙ୍କା ଥିଲେ ମୁଁ ଆପଣଙ୍କ ପାଖକୁ କାହିଁକି ଆସିଥାନ୍ତି । କିନ୍ତୁ ଟଙ୍କା ନାହିଁତ ସୁଯୋଗ ନାହିଁ । ବିଜୟ ଫେରି ଆସିଲେ ବାରିପଦା । ଭୀଷଣ ମନଦୁଃଖ ଏଠି କିଛି କରିବାର ସୁଯୋଗ ନାହିଁ ମତେ ବମ୍ବେ ଯିବାକୁ ପଡିବ । ବହୁ କଷ୍ଟରେ ବମ୍ବେ ଯିବାପାଇଁ କିଛି ପଇସା ଯୋଗାଡ କରି ହାତରେ ନିଜର ସାମାନ୍ୟ କିଛି ଆସବାବ ପତ୍ର ଧରି ଆସି ପହଞ୍ଚିଲେ ବାରିପଦା ବସଷ୍ଟାଣ୍ଡରେ । ଟାଟା ଯିବା ପାଇଁ ବସଟିଏ ଛିଡା ହୋଇଛି । ସେହି ବସ୍‌ରେ ଟାଟା ଯିବେ ସେଠାରୁ ବମ୍ବେ । ବସ୍‌ରେ ଯାଇ ବସିଲେ ବିଜୟ ନିଜକୁ ପ୍ରସ୍ତୁତ କରୁଥାନ୍ତି ମାନସିକ ସ୍ତରରେ ବମ୍ବେରେ ସାଙ୍ଗମାନଙ୍କ ସହିତ କଷ୍ଟରେ ଚଳିବାକୁ । ଏତିକି ବେଳେ ବାପା ତାଙ୍କର ହାତରେ

କାଗଜଟିଏ ଧରି ଆସି ପହଞ୍ଚିଲେ ବସ ନିକଟରେ । କଥାରେ ଅଛି ବିଧିର ବିଧାନ ବଡ ବିଚିତ୍ର । ଭଗବତ୍ ବିଶ୍ୱାସୀ ବିଜୟଙ୍କ ଭାଷାରେ କର୍ମ କରିଚାଲ ଯାହା କିଛି ଘଟିବାର ଅଛି ଘଟିବ । କେମିତି ଘଟୁଛି ଉତ୍ତର ଖୋଜିଲେ ନିଜେ ମଧ୍ୟ ଉତ୍ତର ପାଇବା ବେଳେ ବେଳେ କଷ୍ଟ ହୋଇ ପଡିବ । ବାପାଙ୍କ ହାତରେ ଛୋଟ କାଗଜଟିଏ, ବିଜୟ ! ଦେଖିଲୁ ଏଇଟା କଣ ? କାଗଜଟି ବାପାଙ୍କ ହାତରୁ ନେଲେ ଦେଖିଲେ ସେଇଟା ଟେଲିଗ୍ରାମ୍‌ଟିଏ । ଲେଖା ଅଛି- "Come for shooting Babu Bhai" । ଏହି ବାବୁ ଭାଇ ଚରିତ୍ରଟି କିଏ ସେକଥା ଜଣାନାହିଁ । ଉତ୍କଣ୍ଠା ପୁଣି ଦ୍ୱିଧା, ବସ୍ ଛାଡିବାକୁ ଉଦ୍ୟତ ହେଉଛି । ବସ୍‌ରୁ ଓହ୍ଲାଇ ପଡିଲେ ବିଜୟ । ଟେଲିଗ୍ରାମଟିରେ ଠିକଣା ଲେଖାଥିଲା ରାଣିହାଟ କଟକ । ଯାହାହେଉ ରାଣୀହାଟରେ ଆସି ପହଞ୍ଚିଲେ ବିଜୟ ପଚାରି ବୁଝିଲେ ବାବୁଭାଇ କିଏ । ଜାଣିଲେ ନାଟ୍ୟକାର ଡଃ ବସନ୍ତ ମହାପାତ୍ରଙ୍କ ନାଁ ବାବୁ ଭାଇ ସେ ଏକ ଚଳଚ୍ଚିତ୍ର ପ୍ରଯୋଜନା କରିବାକୁ ଯାଉଛନ୍ତି । ଚଳଚ୍ଚିତ୍ରର ନାଁ "ସଂକଳ୍ପ" । ସେଥିରେ ବିଜୟଙ୍କୁ ନାୟକ ଭୂମିକାରେ ଅଭିନୟ କରିବାକୁ ପଡିବ । ଅଜସ୍ର ଖୁସି, ଭଗବାନଙ୍କ ଉଦ୍ଦେଶ୍ୟରେ କୋଟି ପ୍ରଣତି ଜଣାଇଲେ ବିଜୟ । ସ୍ୱପ୍ନ କ'ଣ ଏତେ ଶୀଘ୍ର ସତ ହୋଇଯାଏ । ତା ପରଦିନ ସମସ୍ତେ ଚାଲିଲେ ସତ୍ୟଭାମା ପୁର (ମଧୁ ବାବୁଙ୍କ ଗାଁ) ସେଠି ଚାଲିଲା ସୁଟିଂ ପ୍ରାୟ ୧୨/୧୪ ଦିନ ଧରି । ହଠାତ୍ ସମସ୍ତ ଉତ୍ସାହରେ ଭଟ୍ଟାପଡିଗଲା । ପ୍ରଯୋଜକ ମହାଶୟ ମୁଣ୍ଡରେ ହାତଦେଇ ବସି ପଡିଲେ- ଟଙ୍କା ସରିଗଲା, ଆଉ ସୁଟିଂ କରିବା ପାଇଁ ଟଙ୍କା ନାହିଁ । ସମସ୍ତ ସ୍ୱପ୍ନ ଅଧାରେ ରହିଗଲା । ପୁଣି ବିଜୟଙ୍କୁ ଫେରି ଆସିବାକୁ ପଡିଲା ବାରିପଦା ।

ମନରେ ବିଶାଦ, ସବୁକିଛି ଅଡୁଆ ତଡୁଆ ହେଇଗଲା । ଯାହା ସେ ଭାବିଯାଉଥିଲେ ସ୍ୱପ୍ନ ସଫଳ ହୋଇଗଲା ବୋଲି । ସେଭଳି କିଛି ହେଲା ନାହିଁ, ଏତିକିବେଳେ ନୂତନ ଗୋଟିଏ ଯୋଜନା ମୁଣ୍ଡକୁ ଆସିଲା- ଯୁଗେଚ୍ଛା ନାଟ୍ୟ ସଂସ୍ଥା ମାଧ୍ୟମରେ ଯେଉଁ ୧୧ଟି ନାଟକ ମଞ୍ଚସ୍ଥ ହୋଇଥିଲା ସେଥିରୁ ପ୍ରାୟ ୪- ୫ଟି ହେବ ଥିଲା ମନୋରଂଜନ ଦାସଙ୍କ ନାଟକ, ସେଥିପାଇଁ ମଝିରେ ମଝିରେ ଚିଠି ଏବଂ ଫୋନ୍ ଦ୍ୱାରା ସେ ସାମାନ୍ୟ ପରିଚିତ ଥିଲେ ମନୋରଂଜନ ଦାସଙ୍କ ନିକଟରେ । ମନୋରଂଜନ ଦାସ୍ ସେତେବେଳେ ଥିଲେ ସଙ୍ଗୀତ ନାଟକ ଏକୋଡେମୀର ସମ୍ପାଦକ । ବିଜୟ ଚିନ୍ତା କଲେ ସେ ଯାଇ ଦେଖାକରିବେ ମନୋରଂଜନ ଦାସଙ୍କୁ ଖଣ୍ଡିଏ ଚାକିରୀ ପାଇଁ । ଚାକିରିଟାଏ ଯଦି ମିଳିଯାନ୍ତା ତା ହେଲେ ସେ ହୁଏତ ନୂଆ କିଛି ଯୋଜନା

କରିପାରନ୍ତେ । ବିଜୟଙ୍କର ପ୍ରକୃତି ହେଲା ଯାହା ଭାବିବେ ଠିକ୍ ଲାଗିଲେ ତାକୁ ସଙ୍ଗେ ସଙ୍ଗେ କାର୍ଯ୍ୟରେ ଲଗାଇ ଦେବେ । ସେ ପ୍ରକୃତି ଏଠି ମଧ୍ୟ କାର୍ଯ୍ୟ କଲା, ବିଜୟ ଆସି ହାଜର ହୋଇଗଲେ ମନୋରଂଜନ ଦାସଙ୍କ ନିକଟରେ । ମନୋରଂଜନ ଦାସଙ୍କୁ ଦେଖାକରି ନିଜର ଦୁଃଖ ଶୁଣାଇବା କଥା । କିନ୍ତୁ ଏକି ଆଚମ୍ବିତ କଥା ଦାସ୍ ମହୋଦୟ କହୁଛନ୍ତି ଆରେ ମୁଁ ତ ଆପଣଙ୍କ ପାଖକୁ ଚିଠି ପଠାଉଥିଲି । ମୋ ପାଖକୁ ଚିଠି ? ମୋ ପାଖକୁ ମନୋରଂଜନ ଦାସ୍ ଚିଠି ପଠାଉଥିଲେ । ଭାବନାଟା ସରି ନାହିଁ ମନୋରଂଜନ ବାବୁ ହାତକୁ ଚିଠିଟି ବଢ଼ାଇ ଦେଲେ । କ'ଣ ଅଛି ଚିଠି ଭିତରେ ? ଉତ୍କଣ୍ଠା ବଢ଼ ଚାଲିଛି । ମନୋରଂଜନ ବାବୁ କହିଲେ ଏଇଟା ତୁମର ଆପଏଣ୍ଟମେଣ୍ଟ ଲେଟର । ନୂଆକରି ଆମର ଗୋଟିଏ ଡ୍ରାମାଡିଭିଜନ୍ ଖୋଲୁଛି । ସେଥିରେ ତୁମେ ଯୋଗ ଦେବ କାଲିଠାରୁ ଇଣ୍ଟରଭିଉ ବୋର୍ଡରେ ତୁମେ ବସିବ ଅନ୍ୟ ସହକାରୀ ମାନଙ୍କୁ ତୁମେ ଆପଏଣ୍ଟମେଣ୍ଟ ଦବ । ବିଜୟ ଭାବି ପାରୁନଥିଲେ ଯାହାସବୁ ଘଟିଯାଉଛି ସବୁକଣ ସତ । ସେ ଆସିଛନ୍ତି ଜଣଙ୍କୁ ଦେଖା କରିବାକୁ ଦେଖାକରି ଫେରିଯିବେ । କିନ୍ତୁ......, କିନ୍ତୁ ସବୁକିଛି ସତ ଥିଲା । ନିରାଟ ସତ୍ୟ । ଚାକିରିରେ ଯୋଗ ଦେଲେ ବିଜୟ । ବିଜୟ ମହାନ୍ତି କହନ୍ତି । ମୋର ପ୍ରଥମ ଚଳଚ୍ଚିତ୍ର (ଅସମ୍ପୂର୍ଣ୍ଣ) ସଙ୍କଳ୍ପ ଠାରୁ ଆରମ୍ଭ କରି ମୋର ଚାକିରିରେ ଯୋଗଦେବା ଯେପରି ନାଟକୀୟ ସିନେମାକୁ ଆସିବା ସେମିତି ଅତିନାଟକୀୟ । ଟିକେ ଉପରକୁ ଚାହିଁ ବିଜୟ କୁହନ୍ତି- ବୟସ୍କ ମାନଙ୍କ ମୁହଁରୁ ଶୁଣିଛି ଏସବୁ ଭାଗ୍ୟର ଖେଳ ଆପଣଙ୍କର ଯାହା କିଛି ଘଟିବାକୁ ଥିବ ଭାଗ୍ୟ ରାସ୍ତା କଢ଼େଇ ନେଇଯିବ । ମୁଁ ଯାହା କିଛି ହାତପାହାନ୍ତାରେ ଏତେ ଶୀଘ୍ର ପାଇଗଲି ଏମିତି ମିଳିଯିବ ବୋଲି କେବେ କଳ୍ପନା କରିନଥିଲି । ଚାକିରି କରୁଥିବା ବେଳେ ଜଣେ ବନ୍ଧୁ ଆସି ପହଞ୍ଚିଲେ ମୋ ନିକଟରେ- ବିଜୟ ! ତୁ ତ ଦିଲ୍ଲୀରେ ଥିଲୁ । ମୋର ଟିକେ ଦିଲ୍ଲୀରେ କାମ ଅଛି, ଚାଲ୍ ଦିଲ୍ଲୀ ଯିବା । ବିଜୟ ସେ ସାଙ୍ଗଟି ସାଙ୍ଗରେ ଯାଇଥିଲେ ଦିଲ୍ଲୀ, ସେଠାରେ ରହଣି କାଳ ମାତ୍ର ଚାରିଦିନ । ଚାରିଦିନ ପରେ ଭୁବନେଶ୍ୱର ଫେରିବା ବେଳକୁ ତାଙ୍କ ଫେରିବା ବାଟକୁ ଚାତକ ଭଳି ଅନାଇ ବସିଛନ୍ତି ତାଙ୍କୁ ପୁଅ ଭଳି ଭଲ ପାଉଥିବା ଜଣେ ବ୍ୟକ୍ତି । ସେ ହେଉଛନ୍ତି ପ୍ରସିଦ୍ଧ ଗୀତିକାର ଶୀବବ୍ରତ ଦାସ । ସେଦିନ ମଧ୍ୟ ଥିଲା ଜାନୁୟାରୀ ୧୪ ତାରିଖ ୧୯୭୭ ମସିହା ଅର୍ଥାତ୍ ଚାକିରିରେ ଯୋଗଦେବାର ଠିକ୍ ଗୋଟିଏ ବର୍ଷ ପରେ । ଶୀବବ୍ରତ ଦାସ କହିଲେ- ଆରେ କଲିକତାରୁ ଲୋକଟା ଆସି ତତେ ସେଠି ଅପେକ୍ଷା କରି ବସିଛି ତୋର ଦେଖା ନାହିଁ । ଆଶ୍ଚର୍ଯ୍ୟ ହୋଇ

ଅନାଇଛନ୍ତି ବିଜୟ କଲିକତାରୁ ଆସି ମତେ କିଏ ଅପେକ୍ଷା କରିଛି । ବୁଝାଇ ଦେଲେ ଶିବବ୍ରତ ବାବୁ- ବିପ୍ଳବରାୟ ଚୌଧୁରୀ କଲିକତାରୁ ଆସି ବାଲୁଗାଁରେ ଡେରା ପକାଇଛନ୍ତି ଗୋଟିଏ ସିନେମା ନିର୍ଦ୍ଦେଶନା ଦବା ପାଇଁ । ସେଥିରେ ତୁମେ ନାୟକ ହେବ । ବିଶ୍ୱାସ କରିପାରୁନଥିଲେ ବିଜୟ ଏହା କଣ ସତ୍ୟ, ପୁଣିଥରେ ସେ ଚଳଚ୍ଚିତ୍ରର ନାୟକ ହେବାର ସୁଯୋଗ ପାଇବେ । ପରଦିନ ଶୀବବ୍ରତ ଦାସଙ୍କ ସହ ବିଜୟ ଚାଲିଲେ ବାଲୁଗାଁ । ଦେଖାହେଲା ବିପ୍ଳବରାୟ୍ ଚୌଧୁରୀଙ୍କ ସହ ବିଜୟଙ୍କୁ ଦେଖି ସେ ଖୁବ୍ ଖୁସି ହୋଇଗଲେ । ସୁଟିଂ ଆରମ୍ଭ ହେଲା, ଚଳଚ୍ଚିତ୍ରଟିର ନାଁ ଥିଲା ''ଚିଲିକା ତୀରେ'' । ବିଜୟ ତାଙ୍କର ପ୍ରଥମ ଅଭିନୀତ ମଞ୍ଚ ନାଟକର ଅଧାରୁ ମଞ୍ଚ ଉପରୁ ପଳାଇ ଆସି ଦ୍ୱିତୀୟ ନାଟକରେ ଶ୍ରେଷ୍ଠ କଳାକାର ଆଖ୍ୟା ପାଇବା ଭଳି । ପ୍ରଥମ ଅଭିନୀତ ଚଳଚ୍ଚିତ୍ର ''ସଂକଳ୍ପ'' ଅଧାରେ ରହିଯାଇଥିଲେ ମଧ୍ୟ ଦ୍ୱିତୀୟଟି ''ଜାତୀୟ ପୁରସ୍କାର'' ପାଇଥିଲା । ଏଥିରେ ଯଦିଓ ସେ ନିଜେ ଶ୍ରେଷ୍ଠ କଳାକାର ପୁରସ୍କାର ପାଇ ନଥିଲେ । କିନ୍ତୁ ଯେଉଁ ନୋମିନେଶନ ଯାଇଥିଲା ସେଥିରେ ତିନିଜଣଙ୍କ ମଧ୍ୟରେ ବିଜୟଙ୍କର ନାମ ଥିଲା । ଅନ୍ୟଦୁଇଜଣ ଥିଲେ ହିନ୍ଦି ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତ ଅଭିନେତା ସଂଜୀବ କୁମାର, ଏବଂ କେରଳର ଜଣେ ଅଭିନେତା ରଘୁ । ରଘୁ ସେ ବର୍ଷ ଶ୍ରେଷ୍ଠ କଳାକାର ପୁରସ୍କାର ପାଇଥିଲେ । ଚିଲିକାତୀରେ ଚଳଚ୍ଚିତ୍ରର ସୁଟିଂସାରି ବିଜୟ ଫେରି ଆସିଥିଲେ ତାଙ୍କର ଚାକିରୀକୁ । ମାତ୍ର ଅଳ୍ପ କିଛିଦିନ ପରେ ସେ କଲେଜ ବାହାରୁଛନ୍ତି ଘର ସମ୍ମୁଖରେ ଗୋଟିଏ ଗାଡି ଆସି ପହଞ୍ଚିଲା । ଗାଡିରେ ବସିଥିଲେ ପ୍ରଖ୍ୟାତ କଣ୍ଠଶିଳ୍ପୀ ଅକ୍ଷୟ ମହାନ୍ତି । ଅକ୍ଷୟ ମହାନ୍ତିଙ୍କ ସହିତ ଆଗରୁ ମଧ୍ୟ ପରିଚିତ ଥିଲା ବିଜୟଙ୍କର । କାରଣ ଅକ୍ଷୟ ମହାନ୍ତି ଥିଲେ ଚାନ୍ଦୋଳ ଅଞ୍ଚଳର । ବିଜୟ ମହାନ୍ତି କେନ୍ଦ୍ରାପଡାର । ପରିବାର ଭିତରେ ବୈବାହିକ ସମ୍ପର୍କ ହେତୁ ସେଥିଲେ ଦୂର ସମ୍ପର୍କୀୟ । ଅକ୍ଷୟ ମହାନ୍ତି ଡାକିଲେ ଆସ ଟିକେ ହୋଟେଲରେ ବସିବା । ସାଙ୍ଗେ ସାଙ୍ଗେ ହଁ ମାରିଲେ ବିଜୟ- ଚାଲନ୍ତୁ । ସମସ୍ତେ ଯାଇ ପହଞ୍ଚିଲେ ହୋଟେଲ ରାଜମହ ଲରେ । ଏତିକିବେଳେ ଅକ୍ଷୟ ମହାନ୍ତିଙ୍କ ସାଙ୍ଗରେ ଆସିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ପକେଟରୁ ବାହାର କଲେ ଖଣ୍ଡିଏ କାଗଜ । ଅକ୍ଷୟ ମହାନ୍ତ କହିଲେ ଦସ୍ତଖତ କର । ବିଜୟ କିଛି ବୁଝି ପାରୁ ନାହାଁନ୍ତି କଣ ସେ କାଗଜ । ଅକ୍ଷୟ ମହାନ୍ତି ଚିହ୍ନାଇ ଦେଲେ । ଏ ବସନ୍ତ ନାୟକ । ବସନ୍ତ ନାୟକ କହିଲେ ମୁଁ ଗୋଟିଏ ଚଳଚ୍ଚିତ୍ର ପ୍ରଯୋଜନା କରିବାକୁ ଯାଉଛି ନାଁ ''ନାଗଫାସ'' ଆଉ ସେଥିରେ ତୁମେ ଖଳନାୟକ ଭୂମିକାରେ ଅଭିନୟ କରିବ । ଏଇଟି ଥିଲା ଯଦିଓ ବିଜୟଙ୍କ ଅଭିନେତା ଜୀବନର

ତୃତୀୟ ଚିତ୍ର, ଦ୍ୱିତୀୟ ପୂର୍ଣ୍ଣାଙ୍ଗ ଚିତ୍ର । କିନ୍ତୁ ପ୍ରଥମ ମୁକ୍ତି ଲାଭ କରିଥିବା ଚିତ୍ର । କାରଣ ଚିଲିକାତୀରେ ଚାଲିଯାଇଥିଲା ''ଜାତୀୟ ପୁରସ୍କାର ପାଇଁ'' । ନାଗଫାସ ଥିଲା ସଂପୂର୍ଣ୍ଣ ବ୍ୟବସାୟୀକ ଚିତ୍ର । ତେଣୁ ସେଇଟି ପ୍ରଥମେ ପ୍ରେକ୍ଷାଳୟର ଆସିଥିଲା ।

ନାଗଫାସ ଚଳଚ୍ଚିତ୍ର ପରଠାରୁ ଆଉ ବିଜୟଙ୍କୁ ପଛକୁ ଫେରି ଚାହିଁବାକୁ ପଡିନି ଗୋଟିଏ ପରେ ଗୋଟିଏ ଚଳଚ୍ଚିତ୍ର ଆସି ପହଞ୍ଚିଲା ହାତ ମୁଠାରେ । ନିର୍ଦ୍ଦେଶକ, ପ୍ରଯୋଜକ ମାନଙ୍କର ଧାଡି ଘର ଆଗରେ । ସମ୍ପୂର୍ଣ୍ଣ ଭିନ୍ନ ଏକ ଜୀବନ । ଚାକିରୀ, ସୁଟିଂ ବ୍ୟସ୍ତତା ହିଁ ବ୍ୟସ୍ତତା । ନାଗଫାସ ଚଳଚ୍ଚିତ୍ର ପରଠାରୁ କିନ୍ତୁ ଆଉ ଗୋଟିଏ କଥା ଘଟିଲା, ସେଥିରେ ବିଜୟଙ୍କର ସଫଳ ଖଳନାୟକର ଭୂମିକା ଦେଖି ଅନେକ ନିର୍ଦ୍ଦେଶକ ତାଙ୍କୁ ଖଳନାୟକ ଭୂମିକା ଦେବାକୁ ପସନ୍ଦ କଲେ । ନାୟକ ଭାବେ ଅଭିନୟ ଆରମ୍ଭ କରିଥିବା ବିଜୟ ମହାନ୍ତି ପିପାସା, ପତିପତ୍ନି, ସଉତୁଣୀ, ସମୟବଡବଳବାନ୍ ଇତ୍ୟାଦି ଚଳଚ୍ଚିତ୍ରରେ ଦର୍ଶକଙ୍କୁ ଅଭୀଭୁତ କରିପକାଇଲେ ଖଳନାୟକ ଅଭିନୟ କରି । ଏତିକିରେ କିନ୍ତୁ ତାଙ୍କର ମନରେ ଶାନ୍ତି ଆସିଲା ନାହିଁ । ଅଭିନୟ ଜଗତର ବିଚିତ୍ର ବିନ୍ଧାଣୀ ବିଜୟ ମହାନ୍ତି ଇଛା କଲେ ଚରିତ୍ର ଭୂମିକାରେ ଅଭିନୟ କରିବାକୁ । ସେ ଚାହିଁବା ମାତ୍ରେ ପ୍ରସ୍ତାବ ଆସି ଅଜାଡି ହୋଇ ପଡିଲା କେବଳ ଚରିତ୍ର ଅଭିନୟ ପାଇଁ । ଏଠାରେ ଘଟିଗଲା ଆହୁରି ଆଶ୍ଚର୍ଯ୍ୟ ଜନକ କଥା, ତାଙ୍କର ଚରିତ୍ର ଅଭିନୟକୁ ଲୋକେ ଏତେ ଅଧିକ ପସନ୍ଦ କଲେ ଯେ, ତାପରେ ପ୍ରଯୋଜକ ନିର୍ଦ୍ଦେଶକ ମାନେ ତାଙ୍କୁ କେବଳ ଚରିତ୍ର ଅଭିନୟ ପାଇଁ ଅନୁରୋଧ କରିଚାଲିଲେ । ବିଜୟ ମହାନ୍ତିଙ୍କ ପାଇଁ ନିଖୁଣ ଅଭିନୟ ଥିଲା ବଡକଥା କେଉଁ ଚରିତ୍ରରେ ଅଭିନୟ କରୁଛନ୍ତି ସେଇଟା ବଡ କଥା ନଥିଲା । ତେଣୁ ନିର୍ଦ୍ଦେଶକ ମାନଙ୍କ ଅନୁରୋଧ ରକ୍ଷା କରିବାରେ ତାଙ୍କୁ ବିଶେଷ ଅସୁବିଧା ହୋଇନଥିଲା ।

ବିଜୟଙ୍କ କଳା ପ୍ରତିଭା କେବଳ ଚଳଚ୍ଚିତ୍ର ଅଭିନୟ ମଧ୍ୟରେ ସୀମାବଦ୍ଧ ହୋଇ ରହିନାହିଁ । ତାଙ୍କ ନିର୍ଦ୍ଦେଶନାରେ ମୁକ୍ତିଲାଭ କରିଛି ଚଳଚ୍ଚିତ୍ର ''ଭୁଲି ହୁଏନା'' ଅନ୍ୟ ଏକ ଚଳଚ୍ଚିତ୍ର ''ଜଗନ୍ନାଥ''ର ସେ ନିର୍ଦ୍ଦେଶନା ଦାୟିତ୍ୱ ନେଇଥିଲେ ମଧ୍ୟ କୌଣସି କାରଣ ବଶତଃ ତାହା ସମ୍ପୂର୍ଣ୍ଣ ହୋଇ ପାରିନାହିଁ । ଚଳଚ୍ଚିତ୍ରକୁ ଛାଡି ଛୋଟ ପରଦାରେ ମଧ୍ୟ ବିଜୟ ମହାନ୍ତି ଜଣେ ସଫଳ କଳାକାର ଭାବେ ଅବତୀର୍ଣ୍ଣ । ଧାରା ବାହିକ ଆଶାର ଆଲୋକ, ଶ୍ରୀ ଜଗନ୍ନାଥ, ସାରା ଆକାଶ, ସମୟ ଚକ, ସକାଳ ଅପେକ୍ଷାରେ, ନ ଦେଖିଲା ଲୋକେ ଦେଖ ଏବଂ ମହାଯଜ୍ଞ ଇତ୍ୟାଦିରେ ବିଜୟ ମହାନ୍ତିଙ୍କ ଅଭିନୟକୁ ଖୁବ୍ ଆଦରରେ ଗ୍ରହଣ କରିଛନ୍ତି ଓଡିଆ ଦର୍ଶକ ।

କୌଣସି କ୍ଷେତ୍ରରେ ଜଣେ ପାରଦର୍ଶିତା ଲାଭ କରିବା ପରେ ତାର ଅନ୍ତରର ନିଭୃତ କୋଣରେ ଜାଗିଉଠିଥିବା ପୁରସ୍କାର ଟିଏ ପାଇବାର ଆଶାକୁ ସେ ଲୁଚାଇ ରଖି ପାରେନା । କାରଣ ପୁରସ୍କାରଟିଏ ହିଁ ମଣିଷକୁ ସ୍ୱୀକୃତି ଏବଂ ପ୍ରେରଣା ଯୋଗାଏ । ବିଜୟ ମହାନ୍ତି ଜଣେ ସଫଳ ଅଭିନେତା ତେଣୁ ତାଙ୍କ ନିକଟରେ ଅଜାଡି ହୋଇ ପଡିଛି ରାଶି ରାଶି ପୁରସ୍କାର ତା ମଧ୍ୟରେ ମୁଖ୍ୟତଃ ରାଜ୍ୟ ସରକାରଙ୍କ ପୁରସ୍କାର, କଳାକ୍ଷେତ୍ରରେ ଉଲ୍ଲେଖନୀୟ ଯୋଗଦାନ ପାଇଁ ଚିନ୍ତାଚେତନା ପକ୍ଷରୁ ପଦ୍ମକେଶରୀ ଉପାଧି, ଏବଂ ବୈଷ୍ଣବ ପାଣି ପୁରସ୍କାର ଏହାଛଡା ଚଳଚ୍ଚିତ୍ର ଜଗତ ଏବଂ ବହୁ ବେସରକାରୀ ଅନୁଷ୍ଠାନ ତରଫରୁ ତାଙ୍କୁ ପୁରସ୍କୃତ ଓ ସମ୍ମାନିତ କରାଯାଇଛି ।

ବିଜୟ ମହାନ୍ତିଙ୍କର ସବୁଠାରୁ ବଡ ଦୁଃଖ ଓଡିଶାରେ ତଥାକଥିତ ବଡ ପଣ୍ଡାମାନଙ୍କର କଳା ବା କଳାକାର ପ୍ରତି ଆଦୌ ଆଦର ନାହିଁ ସମ୍ମାନ ନାହିଁ । ଉତ୍କୃଷ୍ଟ କଳାର ପ୍ରଦେଶ ଓଡିଶାରେ କଳା ବା କଳାକାରରର ଉନ୍ନତି ପାଇଁ ଚେଷ୍ଟା କରିବାକୁ କେହି ନାହିଁ । ଏଠି କଳାକାର ବଡ ଦୁସ୍ଥ । ସେ କହନ୍ତି- ମୋ କଥା ଏକ ଭିନ୍ନ କଥା ମୁଁ ଗୋଟିଏ ସରକାରୀ ଚାକିରୀ କରିଥିଲି ତା ସହିତ ଅଭିନୟ, କୌଣସି ଉପାୟରେ ଜୀବନଟା ଠିକ୍ ଭାବରେ କଟିଯାଉଛି । କିନ୍ତୁ ମୁଁ ଦେଖିଛି ହେମନ୍ତ ଦାସ୍‌ଙ୍କୁ ମୁଁ ଦେଖିଛି ବାବି ଭାଇଙ୍କୁ । ସେମାନେ ଯେଉଁ ଖଟଟିକୁ ମୁଣ୍ଡାଇ ଛିଡା ହୋଇଥିଲେ ଆମେ ଆଜି ସେ ଖଟଟି ଉପରେ ବସିଛୁ । କିନ୍ତୁ କିଏ ବୁଝିଛି ସେମାନଙ୍କ କଥା । ଏ ଅବସ୍ଥାର ପରିବର୍ତ୍ତନ ପାଇଁ ଆମର ମାନସିକ ସ୍ତରରେ ଏକ ପରିବର୍ତ୍ତନ ଆବଶ୍ୟକ, ଆମକୁ ଅନ୍ୟକୁ ସ୍ୱୀକାର କରିବାକୁ ପଡିବ । ମୁଁ ବିଧାତା ଏବଂ ଅନ୍ୟ କେତୋଟି ତେଲଗୁ ଚଳଚ୍ଚିତ୍ରରେ ଅଭିନୟ କରିଛି ୧୫ଟିରୁ ଉର୍ଦ୍ଧ୍ୱ ବଙ୍ଗାଳି ଚଳଚ୍ଚିତ୍ରରେ ଅଭିନୟ କରିଛି ଗୋଟିଏ ହିନ୍ଦି ଚଳଚ୍ଚିତ୍ରରେ ମଧ୍ୟ ଅଭିନୟ କରିଛି । ଆମେ ବାହାର ପ୍ରଦେଶର କଳାକାର ମାନଙ୍କ ସହିତ କଥାବାର୍ତ୍ତା କରିବାବେଳେ, ଆମକୁ ଲାଜ ଲାଗେ ନିଜର ଆର୍ଥିକ ସ୍ଥିତି ପାଇଁ । ସେ ଯାହା ହେଉ ଏଠି ସାଧାରଣ ଲୋକମାନଙ୍କର ଅଜସ୍ର ଶ୍ରଦ୍ଧା ରହିଛି କଳାକାରଟିଏ ପ୍ରତି । ସେତିକି ହିଁ ଏମାଟିର କଳାକାରଟିର ପାଥେୟ ।

ନିଜର ସ୍ୱପ୍ନ ସମ୍ବନ୍ଧରେ କଥା ହେଲା ବେଳେ ବିଜୟ ମହାନ୍ତି କୁହନ୍ତି- ମୁଁ ଗୋଟିଏ ବାସ୍ତବବାଦୀ ମଣିଷ । ଅବାସ୍ତବ ସ୍ୱପ୍ନ ଦେଖେ ନାହିଁ । ଅବଶ୍ୟ କଳାକାରଟିଏକୁ କଳ୍ପନା ରାଜ୍ୟରେ ଘୁରି ବୁଲିବାକୁ ପଡେ । ମୁଁ ମଧ୍ୟ ଘୁରିବୁଲେ କିନ୍ତୁ କେବେ ବାସ୍ତବତାକୁ ଭୁଲିଯାଏ ନାହିଁ । ଏଠି ପ୍ରକୃତ ସମାଜ ସେବା କରିବା ଲୋକଙ୍କ ସଂଖ୍ୟା ନଗଣ୍ୟ ବା ନାହିଁ କହିଲେ ଚଳେ । ତଥାପି ବେଳେ ବେଳେ ଯାଏ

ଅନାଥ ଆଶ୍ରମକୁ ଅନାଥ ପିଲାଟିଏର କଥା ବୁଝିବାକୁ ଭଲ ଲାଗେ ବାସ୍ । ପ୍ରଥମେ ପ୍ରଥମେ ସେଠିକି ଯାଉଥିଲି ଧର୍ମ ପତ୍ନୀଙ୍କ ଅନୁରୋଧରେ । ସେ ଖୁବ୍ ଭଲ ପାନ୍ତି ସେଠିକି ଯିବାକୁ ପରେ ଏକ ଅଭ୍ୟାସରେ ପଡିଗଲା । ମୋର ବ୍ୟକ୍ତିଗତ ସ୍ୱପ୍ନ ଚଳଚ୍ଚିତ୍ର ନିର୍ଦ୍ଦେଶନା ଦେବି ପଯୋଜନାର ସ୍ୱପ୍ନ କେବେ ଦେଖିନାହିଁ କାରଣ ଆର୍ଥିକ ସମ୍ବଳ ନାହିଁ । ମୋ ଦ୍ୱାରା ଯେତିକି ସମ୍ଭବ ପୁରସ୍କାର ପାଇଁ ଚାଲିଥିବା । ଲବି ବିରୁଦ୍ଧରେ ମୁଁ ସ୍ୱର ଉଠାଉଛି । ଏହା ମୋ ପାଇଁ ନୁହେଁ ମୁଁ ତ ବେଶ୍ କିଛି ପୁରସ୍କାର ପାଇସାରିଛି । ଏହା ମୋର ପରପିଢ଼ିର କଳାକାର ମାନଙ୍କ ପାଇଁ ଏବଂ ଅନ୍ୟମାନଙ୍କ ପାଇଁ ।

ସାରା ଓଡିଶା କାହିଁକି ଓଡିଶା ବାହାରର ଲୋକେ ମଧ୍ୟ ବିଜୟ ମହାନ୍ତିଙ୍କୁ ଜାଣିଛନ୍ତି ଜଣେ ଅଭିନେତା ଭାବେ । କିନ୍ତୁ ଖୁବ୍ କମ୍ ଲୋକ ଜାଣିଥିବେ ସାହିତ୍ୟିକ ବିଜୟ ମହାନ୍ତିଙ୍କୁ । ଟେବୁଲ ଉପରେ ପଡିଥିଲା ପତ୍ରିକାଟିଏ । ଛୋଟ ଗୋଟିଏ ଲେଖା ବାହାରିଛି । ଉପରେ ଲେଖାଅଛି ବିଜୟ ମହାନ୍ତି । କି ସୁନ୍ଦର ଭାଷା, କି ସୁନ୍ଦର ପ୍ରକାଶ ଭଙ୍ଗୀ, ଲେଖାରେ ଦର୍ଶନର ଛାପ କିଏ ସେ ବିଜୟ ମହାନ୍ତି ? ପ୍ରଶ୍ନର ଉତ୍ତର- ହଁ ଏଇଟା ମୋ ଲେଖା, ତାପରେ କଥାବାର୍ତ୍ତା ଆରମ୍ଭ, ବେଶ୍ ଲମ୍ବା ସମୟର କଥାବାର୍ତ୍ତା । ସମ୍ପୁର୍ଣ୍ଣ ମାର୍ଜ୍ଜିତ, ଶୁଦ୍ଧ ଓଡିଆ, ଭାବରେ ଗମ୍ଭୀରତା ରହିଛି । ଆପଣ କଣ ଲେଖା ଲେଖି କରନ୍ତି ? ହୁଁ କିଛି କିଛି ଲେଖେ କଣ ସବୁ ଲେଖିଛନ୍ତି ? ମୁଁ ଅନେକ ନାଟକ ଲେଖିଛି । ୧୫ ଟିରୁ ଉର୍ଦ୍ଧ ନାଟକ ଅନୁବାଦ କରିଛି ବିଭିନ୍ନ ଭାରତୀୟ ଭାଷାରୁ । ନିଜ ଲେଖା ଭିତରେ ଅଜାତି, ପ୍ରିୟତମା, ମଧ୍ୟାହ୍ନର ରଙ୍ଗ ଇତ୍ୟାଦି । ସେହିପରି ଅନୁବାଦ ନାଟକ ଭିତରେ ବିଜୟ ତେନ୍ଦୁଲକରଙ୍କର ‘‘ଆଧେ ଅଧୁରେ’’ ବାଦଲ ସରକାରଙ୍କର ‘‘ପାଗଳା ଘୋଡା’’ ‘‘ବାକି ଇତିହାସ’’ ଇତ୍ୟାଦି ।

ବିଜୟ ମହାନ୍ତିଙ୍କ ପାରିବାରିକ ଜୀବନ ତାଙ୍କୁ ଦିଏ ସ୍ୱର୍ଗୀୟ ଆନନ୍ଦ । ପତ୍ନୀ ତନ୍ଦ୍ରା ରାୟଙ୍କ ସହିତ ପ୍ରଥମେ ଦେଖା ହୁଏ ‘‘ଚିଲିକାତୀରେ’’ ଚଳଚ୍ଚିତ୍ର ସୁଟିଂ ସମୟରେ । ଚିଲିକା ମଝିରେ କାଳିଯାଇ ମନ୍ଦିର, ସୁନ୍ଦର ପ୍ରାକୃତିକ ପରିବେଶ । ସୁଟିଂ ଆରମ୍ଭ ହୋଇଥାଏ । ମୁଖ୍ୟ ଅଭିନେତ୍ରୀ ତନ୍ଦ୍ରାରାୟ ମୁଖ୍ୟ ଅଭିନେତା ବିଜୟ ମହାନ୍ତି । ଉଭୟ ଉଭୟଙ୍କୁ ଚିହ୍ନିଲେ ଜାଣିଲେ । କିଛି ଦିନର ରହଣି ମଧ୍ୟରେ ପରସ୍ପରର ବ୍ୟକ୍ତିତ୍ୱ ହାବ ଭାବ ଚାଲି ଚଳନ ବୋଧହୁଏ ଗ୍ରହଣୀୟ ଥିଲା ଉଭୟଙ୍କ ପାଇଁ । ସେ କୁହନ୍ତି- ଆଜିକାଲିର ପ୍ରେମ ବିବାହ କହିଲେ ସମାଜ ଯାହା ବୁଝେ ଆମ କ୍ଷେତ୍ରରେ ଏଇଟା ଠିକ୍ ସେଇଆ ନଥିଲା । ଆମେ ଭାବ ପ୍ରବଣ ହୋଇ ବିବାହ କରିନାହୁଁ । ଜୀବନର ବାସ୍ତବତାକୁ ବିଚାରକୁ ନେଇ ଉଭୟ ପରିବାରର ସମ୍ପୁର୍ଣ୍ଣ ସହମତିରେ

ଆମେ ବିବାହ କରିଛୁ । ସେ ବଙ୍ଗାଳୀ ହୋଇଥିଲେ ମଧ୍ୟ ଆମ ପରିବାର ତାଙ୍କୁ ଖୁବ୍ ଆଦରରେ ଗ୍ରହଣ କଲେ । ଆମର ବୈବାହିକ ଜୀବନ ବେଶ୍ ହସ ଖୁସିରେ କଟିଯାଉଛି । ସେ ତାଙ୍କ ସଂସ୍କୃତିକୁ ଛାଡିନାହାଁନ୍ତି । ତାଙ୍କ ଭାଷାକୁ ଛାଡି ନାହାନ୍ତି । ମୁଁ ଆମ ସଂସ୍କୃତିକୁ ଛାଡି ନାହିଁ । ଆମ ଭାଷାକୁ ଛାଡିନାହିଁ । ଆମ ଝିଅ ''ଜସ୍ମିନ୍'' ଉଭୟ ସଂସ୍କୃତି ଉଭୟ ଭାଷାକୁ ଆଦରି ନେଇଛି । ମୋର ପତ୍ନୀ ଜଣେ ଅଭିନେତ୍ରୀ, ମୁଁ କେବେ ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରେ ନାହିଁ । ସେ ମୋ କାର୍ଯ୍ୟରେ ହସ୍ତକ୍ଷେପ କରନ୍ତି ନାହିଁ । ଆବଶ୍ୟକ ପଡିଲେ ଉଭୟ ବସି ବିଚାର ଆଲୋଚନା କରୁ । ଏବେର ସମାଜକୁ ଚାହିଁ ଗୋଟିଏ ଝିଅରେ ମୁଁ ଖୁବ୍ ଖୁସି । ଏଇତ ଗୋଟିଏ ହସ ଖୁସିର ପୂର୍ଣ୍ଣାଙ୍ଗ ପରିବାର । ମୋ ପରିବାରକୁ ନେଇ ମୁଁ ବେଶ ଖୁସି । ଆଉ ଅଧିକ ଆଶା କରିବାର ଆବଶ୍ୟକତା ନାହିଁ । ବିଜୟ ମହାନ୍ତିଙ୍କ ଭାଷାରେ- ମୁଁ ଲକ୍ଷ୍ୟ କରୁଛି ଆମଲୋକ ମାନେ କେବଳ ପାଇବାର ଆଶା ରଖୁଛନ୍ତି ବରଂ କହିବି ସେମାନେ ପାଇବାକୁ ଦାବି କରୁଛନ୍ତି । କିନ୍ତୁ କେହି ନିଜକୁ ପାଇବାର ଯୋଗ୍ୟ ହେବାପାଇଁ ପ୍ରସ୍ତୁତ କରୁ ନାହାଁନ୍ତି । ଯୁବ ପିଢ଼ିଙ୍କୁ ମୁଁ ଏତିକି କହିବି- ପରିଶ୍ରମ କର କଠୋର ପରିଶ୍ରମ, ନିଜକୁ ଯୋଗ୍ୟକରି ଗଢ଼ିତୋଳ, ସଫଳତା ଆପେ ଆପେ ଆସି ହାତ ମୁଠାରେ ଧରାଦେବ ।

ବିଜୟ ମହାନ୍ତି ଜଣେ ଅଭିନେତା ଜଣେ ବାସ୍ତବବାଦୀ ମଣିଷ ସବୁକିଛି ମିଶାଇ ଜଣେ ଭଲ ମଣିଷ । ଯିଏ ଘରକୁ ଆସିଥିବା ସାଧାରଣ ଅତିଥି ଜଣଙ୍କୁ ବାଟୋଇ ଦେବାକୁ ଓହ୍ଲାଇ ଆସନ୍ତି ଫାଟକ ପର୍ଯ୍ୟନ୍ତ । ଓଡିଶାର କଳାକାର ମାନଙ୍କ ପାଇଁ ଓଡିଶା ମାଟି ପାଇଁ ନିଜ ଅନ୍ତରରେ ଅନେକ ଶ୍ରଦ୍ଧା.ରଖିଥିବା ବିଜୟ ମହାନ୍ତି ଏ ଯାବତ୍ ପ୍ରଚଣ୍ଡ ସାଧନା କରି ଓଡିଶାର ଅଭିନୟ ଇତିହାସରେ ସୃଷ୍ଟି କରିଛନ୍ତି ଏକ ଅମ୍ଳାନ ଅଧ୍ୟାୟ । ଈଶ୍ୱର ତାଙ୍କୁ ଦୀର୍ଘାୟୁ କରନ୍ତୁ ଓଡିଆ ଜାତିପାଇଁ ସେ ସୃଷ୍ଟି କରି ଚାଲନ୍ତୁ ଆହୁରି ଅନେକ ଇତିହାସ । ଏତିକି ହିଁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ଆମର ପ୍ରାର୍ଥନା ।

କଟକ-୧୨



# ନୃତ୍ୟ ବିଶାରଦା ଶ୍ରୀମତୀ କୁମ୍ କୁମ୍ ମହାନ୍ତି

● *ଅଧ୍ୟାପକ ଡକ୍ଟର ନିରଞ୍ଜନ ସାହୁ*

**ଶ୍ରୀ**ମତୀ କୁମ୍ କୁମ୍ ମହାନ୍ତି ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଜଣେ ଖ୍ୟାତନାମା ନୃତ୍ୟଶିଳ୍ପୀ । ଅଦମ୍ୟ ନିଷ୍ଠା, ସ୍ୱକୀୟ ସାଧନା ଓ ତପସ୍ୟା ବଳରେ ସେ ଆଜି ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଜଣେ 'ନୃତ୍ୟ ବିଶାରଦା' । ଏବଂ ଏକ ସୁପରିଚିତ ନାମ । ଝିଅମାନଙ୍କର ନୃତ୍ୟକୁ ଯେତେବେଳେ ସୁଭଗ ଦୃଷ୍ଟିରେ ରକ୍ଷଣଶୀଳ ସମାଜ ଦେଖିପାରୁ ନଥିଲେ, ସେତେବେଳେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତକୁ ବିଭୁ ପାଦପଦ୍ମରେ ପ୍ରାଣର ପୁଷ୍ପାଞ୍ଜଳି ଭାବରେ ଆପଣେଇ ନେଇ ଅର୍ଚ୍ଚନା ଓ ବନ୍ଦନା କରିଥିଲେ ନୃତ୍ୟ ସମର୍ପିତା ଶ୍ରୀମତୀ କୁମ୍ କୁମ୍ ମହାନ୍ତି ।

ଶ୍ରୀମତୀ କୁମ୍ କୁମ୍ ମହାନ୍ତି ନୃତ୍ୟ କଳା କ୍ଷେତ୍ରରେ ଜଣେ ସଚଳ ଲାସ୍ୟମୟୀ ପ୍ରତିଭା । ସେ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟକଳାର ଅନନ୍ୟ କଳାକାର- ନୃତ୍ୟ ପଟ୍ଟୟସୀ । ସେ ଓଡ଼ିଶୀ ସଂସ୍କୃତିର ଅପାସୋରା ରାଗିଣୀ, ଦୁଷ୍ପ୍ରାପ୍ୟ ବୈଭବ । ସେ ରସର ରସେଶ୍ୱରୀ, ଭାବର ଭାବମୟୀ ଓ ଅଭିନୟର ଇଶ୍ୱରୀ ତଥା ବଙ୍ମୟୀ ଲଳିତ ମୂର୍ଚ୍ଛନା । ସେ ପ୍ରତିନିୟତ ସାଧନାରତ । ବହୁ ଜାତୀୟ-ଆନ୍ତର୍ଜାତୀୟ ସମ୍ମାନର ଅଧିକାରିଣୀ । ସେ ଆବେଗ ପ୍ରବଣତାର ଜଣେ ମହିୟସୀ ମାତୃ ପ୍ରତିମା- କାନ୍ତି କୂଳଦେବୀ । ସେ ରସ ଉଚ୍ଛ୍ୱାସର ଏକ କଲ୍ଲୋଳିତ ଆତ୍ମା । ଅନବରତ ନୃତ୍ୟମୁଦ୍ରା, ଅଭିନୟ ଓ ନୃତ୍ୟ ଯୋଗରେ ଭାବାବିଷ୍ଟ ପ୍ରତିମା । ଜଣେ ସାଧାରଣ ମଣିଷ ଅବା ଭକ୍ତିଟିଏ ପାଇଁ ଭଗବତ, ରାମାୟଣ, ହରିବଂଶର ପ୍ରାଣଧର୍ମିତା ପରି ତାଙ୍କ ପାଇଁ ନୃତ୍ୟ ଏକ ଆଧ୍ୟାତ୍ମିକତା, ତପସ୍ୟା ଅବା ଯୋଗୀର ଯୋଗସଧନା । ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ତାଙ୍କର ଅଭିନୟ ପ୍ରାଣସ୍ପର୍ଶୀ ତେଣୁ ସେ ନୃତ୍ୟ ସମ୍ରାଜ୍ୟର ସାମ୍ରାଜ୍ଞୀ ବାଗ୍‌ଦେବୀ ଅର୍ଚ୍ଚନାରେ ନୃତ୍ୟ ସରସ୍ୱତୀ-ଭାବ ଇଶ୍ୱରୀ ।

ଜନ୍ମ ଓ ଜୀବନୀ :

ଶ୍ରୀମତୀ କୁମ୍ କୁମ୍ ମହାନ୍ତିଙ୍କର ୧୯୪୬ ମସିହା ସେପ୍ଟେମ୍ବର ୧୦ତାରିଖରେ କଟକର କାଜିବଜାରରେ ଜନ୍ମ । ତାଙ୍କ ପିତାଙ୍କ ନାମ ବାମାଚରଣ ଦାସ ଓ ମାତାଙ୍କ ନାମ ପୂର୍ଣ୍ୟପ୍ରଭା ଦାସ । ଜଣେ ଯୋଗ୍ୟ ପିତାଙ୍କର ଯୋଗ୍ୟା କନ୍ୟା ଭାବରେ ଶ୍ରୀମତୀ ମହାନ୍ତି ଅଶେଷ ପ୍ରତିଭାର ଅଧିକାରିଣୀ । କଟକର ଏକ ଉଚ୍ଚ ସଂସ୍କୃତି ସଂପନ୍ନ ପରିବାରରେ ଜନ୍ମ ନେଇଥିବା ଶ୍ରୀମତୀ ମହାନ୍ତିଙ୍କ ପିତୃପରିଚୟ ଅସାଧାରଣ । ତାଙ୍କ ପିତା ଶ୍ରୀଯୁକ୍ତ ଦାସ ଥିଲେ ବିଶିଷ୍ଟ ଶିକ୍ଷାବିତ୍, ରେଭେନ୍ସା ମହାବିଦ୍ୟାଳୟର ଗଣିତଶାସ୍ତ୍ରର ଅଧ୍ୟାପକ ଓ ପୂର୍ବତନ ଡି.ପି.ଆଇ । ଓଡ଼ିଶାର ଅନ୍ୟତମ ସାହିତ୍ୟ ସଂସ୍କୃତିର ପ୍ରବଣ ପୀଠ ମାହାଙ୍ଗାର ଶୁକ୍ଳେଶ୍ୱର ଗ୍ରାମରେ ତାଙ୍କର ଜନ୍ମ । ସେହି ଅର୍ଥରେ ଶ୍ରୀମତୀ କୁମ୍‌କୁମ୍ ମହାନ୍ତି ଉଚ୍ଚ ସଂସ୍କୃତି ସଂପନ୍ନ ଓ କଳା ବିମଣ୍ଡିତ ମାହାଙ୍ଗା ମାଟିର କନ୍ୟା । ଏହି ସାଂସ୍କୃତିକ ପରମ୍ପରା ଏବଂ କଳା ସାହିତ୍ୟକୁ ସମୃଦ୍ଧି କରିବାରେ ତାଙ୍କ ପାଇଁ ତାଙ୍କ ସ୍ୱର୍ଗତ ପିତା ଓ ସ୍ୱର୍ଗତ ମାତାଙ୍କର ଅବଦାନ ଅତୁଳନୀୟ । ଏପରିକି ତାଙ୍କ ଅଜାଥିଲେ ମଧ କଳା ଓ ସାହିତ୍ୟର ପରମ ଉପାସକ ଓ ମହାନ ପୃଷ୍ଠପୋଷକ ।

ଶ୍ରୀମତୀ ମହାନ୍ତି ନିଜ ସଂପର୍କରେ ନିଜେ ସ୍ମୃତିରୁ କହନ୍ତି- ''ମୁଁ ଜନ୍ମ ପରେ ମୋର ଅଢ଼େଇ ବର୍ଷ ଯାଏ ପାଟି ଫିଟୁନଥିଲା ବୋଲି ମୋ ମା' କହେ ।' ମୁଁ ଘୁଙ୍ଗୀଥିଲି । ପାଟି ଫିଟୁନଥିଲା । ଠାରରେ କଥା କହୁଥିଲି । ଗୁମ୍‌ମାରି ବସୁଥିଲି । ମୋତେ ଆମ ଘରେ ହତାଦର କରୁଥିଲେ । ମୋତେ ଚତୁର୍ଥ କନ୍ୟା, ରଙ୍ଗମଇଳା, ଘୁଙ୍ଗ, ଗୁମ୍ ହୋଇ ବସୁଥିବାରୁ ଗୁମାନ୍ ବୋଲି ଡାକୁଥିଲେ । କିନ୍ତୁ ମୁଁ ଯେଉଁ ଦିନ ପ୍ରଥମେ କଥା କହିଲି ସେଇଦିନ ବ୍ୟାକରଣ ଶୁଦ୍ଧ ଥାଇ କଥା କହିଲି ।''

କଟକର କାଜିବଜାରରେ ଏକ ଭଡ଼ାଘରେ ବାମାଚରଣ ଦାସ ରହୁଥିଲେ । ଏହି ଭଡ଼ାଘର ଥିଲା କୁମ୍‌କୁମ୍‌ଙ୍କର ଭାଗ୍ୟ ନିର୍ଦ୍ଧାରଣର ପବିତ୍ର ପୀଠ । ତତ୍‌କାଳରେ ଶ୍ରୀଯୁକ୍ତ ଦାସ ଥିଲେ ରେଭେନ୍ସା କଲେଜର ଗଣିତ ଅଧ୍ୟାପକ ଓ ବହୁ ଖ୍ୟାତିର ଅଧିକାରୀ । ତେଣୁ ଏକ ସଂସ୍କୃତି ପ୍ରାଣ ପରିବେଶ ଓ ଉଚ୍ଚାଙ୍ଗ ଭାବବୋଧର ପରିବେଶ ପାଇଥିଲେ ଶ୍ରୀମତୀ କୁମ୍ କୁମ୍ ମହାନ୍ତି ।

ଶ୍ରୀମତୀ ମହାନ୍ତି ପିଲାଦିନେ ବହୁ ଡ଼େରିରେ ପାଠ ପଢ଼ିଥିଲେ । ହିନ୍ଦୁ ମହିଳା ଟ୍ରେନିଂ ସ୍କୁଲ୍, ବକ୍ସିବଜାରରେ ସେ ଶିଶୁ ଶ୍ରେଣୀରେ ନାମଲେଖାଇଲେ । ଏହାଥିଲା ତାଙ୍କର ପ୍ରାଥମିକ ଶିକ୍ଷା । ତୁଳସୀ ଦୁଇପତ୍ରରୁ ବସିଲା ପରି ଶିଶୁ ଶ୍ରେଣୀରୁ ତାଙ୍କର ମେଧାଶକ୍ତିର ବିକାଶ ଘଟିଥିଲା । ଶିଶୁ ଶ୍ରେଣୀରେ ସେ ପ୍ରଥମ ହୋଇଥିଲେ । ଶିଶୁଶ୍ରେଣୀରେ ପ୍ରଥମ ହୋଇ ନିଜର ଘୁଙ୍ଗୀ ଓ ଘରର ହତାଦର ନାମସବୁକୁ ହଟାଇଦେବାର ପ୍ରୟାସ କରିଥିଲେ । ତଥାପି ଗଣିତଜ୍ଞ ପିତା ବାମାଚରଣ ଦାସଙ୍କ ମନ ଉଚ୍ଚାଟ ହୋଇନଥିଲା ହତାଦରର ଭାବ ଓ ହେୟ ବାକ୍ୟ କଟିନଥିଲା । ପିଲା ଦିନର ସ୍ମୃତି ମନେପକାଇ ଶ୍ରୀମତୀ ମହାନ୍ତି କୁହନ୍ତି- ''ମୁଁ ଖୁସିରେ ଧାଇଁ ଆସି କହିଲି ବାପା ମୁଁ ଶିଶୁ ଶ୍ରେଣୀରେ ଫାଷ୍ଟ ହୋଇଛି । ବାପା କହିଲେ- ବୁଢ଼ୀ ଦିନେ ଆସି ପାଠ ପଢୁଛି; କହିଲା କ'ଣ ନା ମୁଁ ଶିଶୁ ଶ୍ରେଣୀରେ ଫାଷ୍ଟ ହୋଇଛି । ମନ ସେ ଦିନ ମଉଳି ଯାଇଥିଲା ।''

ତତ୍‌ପରେ ବାମାଚରଣ ଦାସ ପୁରୀ ବଦଳି ହେଲେ । ପରିବାର ସହ ପରୀ ଯାତ୍ରାକଲେ । ଶ୍ରୀ ଜଗନ୍ନାଥଙ୍କ ଡୋରିଲାଗିଲା । ଭାବାବିଷ୍ଟ ହେଲେ କୁମ୍ କୁମ୍ । ପାଠ ପଢ଼ାରେ ମନ ନିବିଷ୍ଟ ହେଲା । ଘରେ ମା' ପୂର୍ଣ୍ୟପ୍ରଭାଙ୍କ ତତ୍ତ୍ୱାବଧାନରେ ପାଠ ପଢ଼ି ପୁରୀ ଗାର୍ଲସ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଥିଲେ । ଶିକ୍ଷାପାହାଚ ଚଢ଼ିବାରେ ଅଭିଳାଷ ଆରମ୍ଭ ହେଲା । ଛ' ମାସପରେ ବାମାଚରଣ ଦାସ ପୁଣି କଟକ ବଦଳି ହେଲେ କୁମ୍ କୁମ୍ ଫେରିଆସିଲେ ପୁଣି ପ୍ରିୟ ମାଟି କଟକକୁ । ପୁଣି ହିନ୍ଦୁ ମହିଳାସ୍କୁଲରେ ନାମ ଲେଖାହେଲା । ଚତୁର୍ଥରୁ ସପ୍ତମଯାଏ ପାଠପଢ଼ା ଚାଲିଲା । କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ କୁମ୍ କୁମ୍ । ରେଭେନ୍‌ସା ଗାର୍ଲସ ସ୍କୁଲରେ ଅଷ୍ଟମରୁ ଏକାଦଶ ଯାଏ ଅଧ୍ୟୟନ କରି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଶୈଳବାଳା ମହିଳା କଲେଜରେ ଆଇ.ଏ.ଅଧ୍ୟୟନ କଲେ । ରାଜନୀତି ବିଜ୍ଞାନରେ ସମ୍ମାନରେ ବି.ଏ. ଅଧ୍ୟୟନ କଲେ ଓ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ହୋଇ ଉତ୍ତୀର୍ଣ୍ଣ ହେଲେ । ଏମ୍.ଏ. ପଢ଼ିବା ପାଇଁ ବାଣୀବିହାର ଗଲେ । ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ପ୍ରାପ୍ତ ହେଲେ । ଜଣେ ମେଧାବୀ ଛାତ୍ରୀର ପରିଚୟ ଦେଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପରି ଖ୍ୟାତି ସଂପନ୍ନ ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ ହେବା

କମ୍ ଗୌରବର ବିଷୟ ନୁହେଁ । ଗଭୀର ଅଧ୍ୟବସାୟ, ନିଷ୍ଠା, ପ୍ରତିଯୋଗୀ ମାନସିକତା ତାଙ୍କୁ ମର୍ଯ୍ୟାଦା ପ୍ରଦାନ କରିଥିଲା ।

ଶ୍ରୀମତୀ ମହାନ୍ତି ଅଧ୍ୟାପିକାର ଜୀବନ ଶୈଳବାଳା ମହିଳା କଲେଜରୁ ଆରମ୍ଭ କରିଥିଲେ । ଦେଢ଼ବର୍ଷର ଅଧ୍ୟାପିକା ଜୀବନ । ଏହି ସମୟରେ ଆଇ.ଏ.ଏସ୍ ଦେଲେ; ମାତ୍ର ମୌଖିକ ପରୀକ୍ଷାରେ ଅକୃତ କାର୍ଯ୍ୟ ହେଲେ ମଧ୍ୟ ଆଲାଡ଼ରେ ପ୍ରଥମ ସ୍ଥାନ ଅଧିକାର କଲେ । ମୌସୁରୀ ଟ୍ରେନିଂରେ ଗଲେ ଓ ୧୯୭୦ ମସିହାରେ ଭାରତୀୟ ଡାକ ସେବାରେ ଯୋଗ ଦେଲେ । ଜଣେ ଉଚ୍ଚପଦସ୍ତ ସରକାରୀ କର୍ମଚାରୀ ଭାବରେ ନିଷ୍ଠା ଓ କର୍ମଦକ୍ଷତା ପ୍ରମାଣିତକରି ଖ୍ୟାତି ଅର୍ଜନ କଲେ ।

**ନୃତ୍ୟ ଓ ସଙ୍ଗୀତ କଳା :**

ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ହେଲେ ମଧ୍ୟ ଶ୍ରୀମତୀ କୁମ୍ କୁମ୍ ମହାନ୍ତି ଥିଲେ କଳା-ସଂସ୍କୃତିପ୍ରାଣ । ପିଲାଟି ଦିନରୁ ସେ ଥିଲେ ନୃତ୍ୟ ଓ ସଂଗୀତ ପ୍ରତି ସମର୍ପିତା । ପିଲାଦିନର ସ୍ମୃତି ମନେପକାଇ ସେ କହନ୍ତି- "ମୁଁ ଥରେ ଘରୁ ନିଖୋଜ ହୋଇ ଯାଇଥିଲି । ମାନେ ହଜି ଯାଇଥିଲି । ବାପା ପୋଲିସ୍‌ରେ ନିଖୋଜ ଖବର ଦେଇଦେଲେ । ଚାରିଆଡ଼େ ଖୋଜା ଖୋଜି ଚାଲିଲା । ମୁଁ ପଳେଇଥିଲି ଗୋଟେ ବ୍ୟାଣ୍ଡପାର୍ଟି ବାଜା ପଛେ ପଛେ । ମାନେ ମୁଁ କାଜି ବଜାରରୁ ଖଟବିନ୍ ସାହି ପର୍ଯ୍ୟନ୍ତ ପଳେଇ ଯାଇଥିଲି । ଛୋଟ ପ୍ୟାଣ୍ଟିଏ ପିନ୍ଧିଥିଲି । ମୁଁ କିଛି ବୁଝି ନଥିଲି । ବ୍ୟାଣ୍ଡପାର୍ଟି ଗୀତ ଓ ବାଜା ମୋତେ ଟାଣି ନେଇଥିଲା । ଯେଉଁଠି ବାଜା ଅଟକିଗଲା ମୁଁ ସେଇଠି ଅଟକି ଥିଲି । ଲୋକେ ଯାଇ ମୋତେ ଖୋଜି ଆଣିଲେ ।"

ସଂଗୀତ ପ୍ରତି ଶ୍ରୀମତୀ ମହାନ୍ତି ଥିଲେ ଆକର୍ଷିତ । ହିନ୍ଦୁ ମହିଳା ସ୍କୁଲରେ ସପ୍ତମ ଶ୍ରେଣୀରେ ପଢୁଥିଲା ବେଳେ ନାଚଶିକ୍ଷା କଲେ । ସେତେବେଳେକୁ ବୟସ ୯/୧୦ବର୍ଷ ହେବ । ବାନ୍ଧବୀ ପ୍ରତିମା ଦାସଙ୍କ ପାଠପଢ଼ା ସହ ନାଚସ୍କୁଲରେ ନାମ ଲେଖା ଓ ନୃତ୍ୟ ଶିକ୍ଷା ତାଙ୍କୁ ଆକର୍ଷିତ କଲା । କଳା ବିକାଶ କେନ୍ଦ୍ର ରାଣୀହାଟ ବ୍ରାଞ୍ଚ ସ୍କୁଲରେ ନାମ ଲେଖାଇଲେ । ଏହା ତାଙ୍କର ପ୍ରଥମ ନାଚଗୀତ ଶିକ୍ଷାକେନ୍ଦ୍ର ।

ରାଣୀହାଟ କଳା ବିକାଶ କେନ୍ଦ୍ର ବ୍ରାଞ୍ଚଟି ଏକ ମନ୍ଦିର ଭିତରେ ଚାଳଘରେ ଚାଲୁଥିଲା । ଗୁରୁ କେଳୁଚରଣ ମହାପାତ୍ର ନାଚ ଶିକ୍ଷା ପ୍ରଦାନ କରୁଥିଲେ । ଗୁରୁ ବାଳକୃଷ୍ଣ ଦାସ ଗୀତ ଶିକ୍ଷା ପ୍ରଦାନ କରୁଥିଲେ । କୁମ୍‌କୁମ୍ ପିଲାଦିନେ ଖୁବ୍ ଥିଲେ ଗମ୍ଭୀର । ଗୁମ୍ ମାରି ବସୁଥିଲେ । ଏପରି ଗୁମ୍ ଅବସ୍ଥା ଦେଖି କେଳୁସାର୍ ଡ୍ରିଲ କରିବାକୁ କହିବାରୁ, କୁମ୍ କୁମ୍ ନାଚଘରେ ଲେଫ୍‌ଟ ରାଇଟ୍ ବୋଲ ଡାକି ଆରମ୍ଭ କଲେ ଡ୍ରିଲ୍ । ଡ୍ରିଲ୍‌ରୁ ଆରମ୍ଭ ହେଲା ନୃତ୍ୟ । ଛ' ମାସ ପରେ କଳା ବିକାଶ କେନ୍ଦ୍ର ବାଙ୍କା ବଜାରକୁ ସ୍ଥାନାନ୍ତରିତ ହେଲା । ସ୍ଥାନାନ୍ତରିତ ହେଲେ କୁମ୍ କମ୍ । ସେଠି ଆରମ୍ଭ ହେଲା ନୃତ୍ୟ ସାଧନା । ପ୍ରତିଟି ଡ୍ୟାନ୍‌ସ ଡ୍ରାମାରେ ସେ ହେଲେ ନାୟିକା- ମାନିନୀ ଶ୍ରୀ ରାଧା । ଅଷ୍ଟମ ଶ୍ରେଣୀରେ ପାଠ ପଢୁଥିଲା ବେଳେ 'ପୂଜାରିଣୀ' ଡ୍ୟାନ୍‌ସ ଡ୍ରାମାରେ ଜୟନ୍ତୀ ଘୋଷାଲ ହୋଇଥିଲେ 'କୃଷ୍ଣ' ଓ ସେ ହେଲେ 'ରାଧା' । 'ପୂଜାରାଣି' ଡ୍ୟାନ୍‌ସ ଡ୍ରାମା ଦେଲା ଅସାମାନ୍ୟ ସମ୍ମାନ । ନୃତ୍ୟ ଜୀବନର ଗତିପରିବର୍ତ୍ତିତ ହେଲା । ନୃତ୍ୟରେ ସରସ୍ୱତୀଙ୍କର ଆବିର୍ଭାବ ଘଟିଥିଲା ।

ନୃତ୍ୟ କ୍ଷେତ୍ରରେ ତାଙ୍କ ମା'ଥିଲେ ପ୍ରେରଣା ଦାୟିନୀ । ତେବେ ପାଠ ଭଲ ନକଲେ ଯେ କୌଣସି ମୁହୂର୍ତ୍ତରେ ନାଚ ବନ୍ଦ ହେବାର ଧମକ ବାପାଙ୍କର ରହିଥିଲା । ଶ୍ରୀମତୀ ମହାନ୍ତି ସ୍ମରଣ କରି କୁହନ୍ତି- ''ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ ନହେଲେ ନାଚବନ୍ଦ ବୋଲି ବାପାଙ୍କ ଧମକ ମୋତେ ପାଠ ଓ ନାଚ ଉଭୟକୁ ସମାନ ଧ୍ୟାନ ଦେବାକୁ ପଡୁଥିଲା । ନୃତ୍ୟ ମୋର ଥିଲା ପ୍ରେମ । ପାଠ ମୋର ଥିଲା ପ୍ରେମର ଉଚ୍ଛ୍ୱାସ । ପାଠ ଭଲ ନକଲେ ନୃତ୍ୟ ବନ୍ଦ ହୋଇଯିବା ଭୟରେ ମୁଁ ଘୋର ପରିଶ୍ରମ କରୁଥିଲି । ମୋର ମଧ୍ୟ ଖୁବ୍ ସ୍ମରଣ ଶକ୍ତି ଥିଲା । ଗୀତ ଓ ନୃତ୍ୟ ଯେପରି ମନେରହି ଯାଉଥିଲା ପାଠ ସେହିପରି ମନେରହି ଯାଉଥିଲା । ସମସ୍ତ ଅନ୍ଧାର ହଟିଯାଉଥିଲା । ମୁଁ ପଢ଼ିଲି ପୁଣି ନାଚିଲି ।''

ପାଠପଢ଼ା ସହିତ ନାଚ, ଉଭୟ ତାଙ୍କର ଥିଲା ସାଧନାର କ୍ଷେତ୍ର । ଏହି ସାଧନା କ୍ଷେତ୍ରରେ ତାଙ୍କ ପିତାଥିଲେ ହିମାଳୟ ଆରୋହଣ ସ୍ୱପ୍ନର ସ୍ମୃତିସ୍ତମ୍ଭ ଏବଂ ମା' ଥିଲେ ରସ ସମୁଦ୍ରର ଭାବ ଫଲ୍‌ଗୁ । ମା'ଙ୍କର ନାଚଗୀତ ପ୍ରତିଥିବା ଭୟଙ୍କର ଦୁର୍ବଳତା ଶ୍ରୀମତୀ ମହାନ୍ତିଙ୍କ ସମସ୍ତ ପ୍ରତିବନ୍ଧକ ଦୂରେଇ ଦେଇଥିଲା ।

ଶ୍ରୀମତୀ ମହାନ୍ତିଙ୍କ କଲେଜ ଜୀବନରେ ନୃତ୍ୟ ଗୀତ ପ୍ରତି ଆକର୍ଷଣ ଥିଲା ସୁତୀବ୍ର । ତାଙ୍କର ଅନ୍ୟ ତିନି ବଡଭଉଣୀ ରକ୍ଷଣଶୀଳ ଜୀବନ ଅତିବାହିତ କରିଥିଲେ । ଏପରି କି ଅନ୍ୟତମ ଭଉଣୀ ଅସାମାନ୍ୟ ପ୍ରତିଭା ବନ୍ଦନା ଦାସ ରକ୍ଷଣଶୀଳତାର ଅଧିକ ଶିକାର ହୋଇଥିଲେ । କୁମ୍ କୁମ୍ କିନ୍ତୁ ସୌଭାଗ୍ୟ ଓ ସାଧନା ବଳରେ ସେସବୁରୁ ମୁକ୍ତଥିଲେ । କାରଣ ସେ ଭଲ ପାଠ ପଢୁଥିଲେ । ନାଚରେ ଭଲ କରିବା ସହିତ ପାଠରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସେ ସମସ୍ତଙ୍କୁ ଚୁପ୍ କରାଇ ଦେଉଥିଲେ । ବାପାଙ୍କର କଡ଼ା ନିୟମ ଓ ମା'ଙ୍କର ବାତ୍ସଲ୍ୟ ସ୍ନେହ ତଥା ନିଜର ଏଥିପାଇଁ ନିଷ୍ଠା ଓ ସାଧନା ତାଙ୍କୁ ଉଭୟ ମାର୍ଗ (ନାଚ-ପାଠ) ରେ ତୁଙ୍ଗିମା ସ୍ପର୍ଶ କରାଇ ପରିଥିଲା ।

All India Gita Govinda ସେମିନାର କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ, ଦିଲ୍ଲୀରେ ଅନୁଷ୍ଠିତ ହେଲା । ସେତିକିବେଳେ ଶ୍ରୀମତୀ କୁମ୍ କୁମ ମହାନ୍ତି ଏମ୍. ଏ. ଶ୍ରେଣୀର ଛାତ୍ରୀ । ଆଗକୁ ଅଛି ଏମ୍.ଏ. ପରୀକ୍ଷା । ଏହି ସେମିନାରରେ ଭିତ୍ତି ପ୍ରବନ୍ଧମାନ ଉପସ୍ଥାପନ କରିବେ ମାଡ୍ରାସର ରୁକ୍ମିଣୀ ଦେବୀ ଅରୁଣ୍ଡେଲ (ଭାରତ ନାଟ୍ୟମ୍) କାଳିଚରଣ ପଟ୍ଟନାୟକ (ଓଡ଼ିଶୀ) ଓ ବନ୍ଦାକାନ୍ଗ ଗିଲେଶ୍ୱର ପ୍ରମୁଖ ବିଭିନ୍ନ ଶାସ୍ତ୍ରୀୟନୃତ୍ୟ ଜଗତର ଖାତିସଂପନ୍ନ ବିଶେଷଜ୍ଞମାନେ । ଏହା ଏକ ବିରାଟ ସେମିନାର ଥିଲା । ଏହି ସେମିନାରରେ ଓଡ଼ିଶୀ ଡେମନଷ୍ଟ୍ରେସନ ପାଇଁ ଗୁରୁ କେଳୁଚରଣ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଯାଇଥିଲେ ଶ୍ରୀମତୀ କୁମ୍‌କୁମ୍ ମହାନ୍ତି । 'ଗୀତଗୋବିନ୍ଦ'ର ଅଭିନୟ ଡେମନଷ୍ଟେସନ ହୋଇଥିଲା । ଏହି ଅଭିନୟ ଥିଲା ଶ୍ରୀମତୀ ମହାନ୍ତିଙ୍କର କ୍ରମ ଉତ୍ତରଣ ପର୍ବ । ଏହି ଆୟେଜନରେ ତାଙ୍କୁ ତାଙ୍କର ଗୁରୁ କେଳୁଚରଣ ମହାପାତ୍ର, ପିତା ବାମାଚରଣ ଦାସ ଓ ସଂସ୍କୃତ ପଣ୍ଡିତ ପଞ୍ଚାନନକର ସହଯୋଗ ଓ ପ୍ରୋତ୍ସାହନ ଯୋଗାଇ ଥିଲେ । 'ଗୀତ ଗୋବିନ୍ଦ' ଅଭିନୟର ପାରଦର୍ଶିତା ତାଙ୍କୁ ସଫଳତାର ପାହାଚ ଉଠିବାକୁ ପଥପରିଷ୍କାର କରିଦେଇଥିଲା ।

ତତ୍‌ପରେ 'All India Dance Festival'ରେ ଯାମିନୀ କୃଷ୍ଣ ମୂର୍ତ୍ତିଙ୍କ ସହିତ ୧୯୬୭ ରେ ନୃତ୍ୟ କାର୍ଯ୍ୟକ୍ରମର ଆୟୋଜନ ହୋଇଥିଲା । ଏହା ଥିଲା ଶ୍ରୀମତୀ ମହାନ୍ତିଙ୍କର ନୃତ୍ୟ ସଫଳତାର ଆଉ ଏକ ଶଙ୍କୁ ।

ଯାହା ଥିଲା ତାଙ୍କର ନୃତ୍ୟ ଜୀବନର ଆଉ ଏକ ମୋଡ଼ । ଷ୍ଟେଟସ୍ ମ୍ୟାନ ଆଦି ପତ୍ର ପତ୍ରିକା ପ୍ରଶଂସାରେ ଶତମୁଖ ହୋଇଉଠିଥିଲେ । ସମସ୍ତଙ୍କର ସେ ଦୃଷ୍ଟି ଆକର୍ଷଣ କରିଥିଲେ ।

ତତ୍‌ପରେ ICCR ର ନୃତ୍ୟ ସୁଯୋଗ । ଜାପାନ ଓ ଋଷିଆ ଯାତ୍ରା । ବାପା ମନା କରୁଥିଲେ । କାରଣ ସେ ଚାହୁଁଥିଲେ ଝିଅ I.A.S ହେଉ । I.A.S ରେ ସଫଳତା ଏକାନ୍ତ ପ୍ରୟୋଜନ । କାରଣ ଏହା ସର୍ବଭାରତୀୟ ସେବା ପରୀକ୍ଷା । ଶ୍ରୀ ମହାନ୍ତି ଋଷିଆ ରେ ସବୁଠାରୁ ଅଧିକ ସଫଳତା ଅର୍ଜନ କଲେ । I.A.S ରେ ଲିଖିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ମାତ୍ର ମୌଖିକ ପରୀକ୍ଷାରେ ଅସଫଳ ହେଲେ ମଧ୍ୟ ଆଲାଡ଼ରେ ପ୍ରଥମ ହେଲେ ।

ଶ୍ରୀମତୀ ମହାନ୍ତି ଥିଲେ ଧ୍ୟାନସ୍ଥ ତପସ୍ୱିନୀ ଓ ସ୍ଥିତପ୍ରଜ୍ଞା । କୌଣସି ଆଦରର କର୍ମ ତାଙ୍କ କର୍ମଧାରାରୁ ବିଚ୍ୟୁତ ହୁଏ ନାହିଁ । ସେ ପ୍ରତିଟି କର୍ମରେ ଭାବ ନିବିଷ୍ଟ ହୁଅନ୍ତି । କର୍ମ ସଂପାଦନରେ ବିମୁଖ ନହୋଇ ଆନ୍ତରିକତା ପ୍ରଦର୍ଶନ କରନ୍ତି । ସେହି ଆନ୍ତରିକତା ତାଙ୍କୁ ପ୍ରଦାନ କରିଛି ସଫଳତା । ପୁରସ୍କାର ପ୍ରାପ୍ତି ପ୍ରତି ଲାଳାୟିତ ନହୋଇ କର୍ମଦକ୍ଷତା ପ୍ରତି ସେ ଦେଖାଇଛନ୍ତି ମୁଗ୍ଧ ଦୃଷ୍ଟି । ଏହାହିଁ ତାଙ୍କ ସଫଳତାର ଭାବ ବିଭୂତି ବୋଲି ମନେକରାଯାଇପାରେ ।

୧୯୫୩ ମସିହାରେ ମାନ୍ଦ୍ରାଜ କଳାକ୍ଷେତ୍ରର ପ୍ରତିଷ୍ଠାତ୍ରୀ ତଥା ବିଶିଷ୍ଟ ନୃତ୍ୟ ବିଶାରଦା ଶ୍ରୀମତୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲ୍ କଳାବିକାଶ କେନ୍ଦ୍ର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ । ଏହି ଅବକାଶରେ ନୃତ୍ୟଗୁରୁ କେଳୁ ଚରଣ ମହାପାତ୍ରଙ୍କ ସହଧର୍ମିଣୀ ଶ୍ରୀମତୀ ଲକ୍ଷ୍ମୀ ଦେବୀ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ସାମ୍ବାଦିକମାନେ ତାଙ୍କର ଦୃଷ୍ଟି ଆକର୍ଷଣ କରିବାରୁ ସେ ମତାମତ ଦେଇ କହିଥିଲେ ଯେ- "ଏହା ହେଉଛି ଭାରତନାଟ୍ୟମ୍‌ର ଦୟନୀୟ ଅନୁକରଣ " । ଏପରି ମନ୍ତବ୍ୟ ସମସ୍ତଙ୍କୁ ଆଘାତ ଦେଇଥିଲା । ତେବେ ଓଡ଼ିଶୀନୃତ୍ୟ କ୍ଷେତ୍ରରେ ଦକ୍ଷିଣୀ ଶାଢ଼ୀ ପିନ୍ଧା ଓ ଅଳଙ୍କାରର ଅନୁକରଣ ଏହିପରି ମନ୍ତବ୍ୟକୁ ସେ ଦିନ ଆମନ୍ତ୍ରଣ କରିଥିଲା । ତେବେ ତତ୍‌ପରବର୍ତ୍ତୀ ସମୟରେ ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଆସିଛି ସଂସ୍କାର ଯୁଗ । ଏହି ସଂସ୍କାର ଯୁଗରେ ଗୁରୁ ପଙ୍କଜଚରଣ ଦାସ, କବିଚନ୍ଦ୍ର କେଳୁଚରଣ

ପଟ୍ଟନାୟକ, ଗୁରୁ କେଳୁ ଚରଣ ମହାପାତ୍ର, ମାୟାଧର ରାଉତ, ଗୁରୁ ଦେବପ୍ରସାଦ ଦାସ, ଗୁରୁ ରଘୁନାଥ ଦତ୍ତ ପ୍ରମୁଖଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଏ ଦିଗରେ ମଧ୍ୟ ଲକ୍ଷ୍ମୀ ଦେବୀ, ମୀନତି ମିଶ୍ର, ପିୟମ୍ବଦା ମହାନ୍ତି, ସଂଯୁକ୍ତା ପାଣିଗ୍ରାହୀ ଓ କୁମ୍ କୁମ୍ ମହାନ୍ତିଙ୍କ ଅବଦାନ ଅବିସ୍ମରଣୀୟ ।

ଶ୍ରୀମତୀ କୁମ୍ କୁମ୍ ମହାନ୍ତି ଏହି ସଂସ୍କାର ଯୁଗର ଅନ୍ୟତମ ସଂସ୍କାରିକା । ନୃତ୍ୟ ମୁଦ୍ରା ସଂରକ୍ଷଣ ଓ ନୃତ୍ୟ ସାରଣୀ ପ୍ରସ୍ତୁତକରି ସେ ନୃତ୍ୟ ବୟାକରଣିକା ଭାବରେ ପରିଚିତା । ବୁଦ୍ଧିମତ୍ତା, ନିଷ୍ଠା, ଆନ୍ତରିକତା, ସଂସ୍କୃତିପ୍ରୀତି ଓ ସାଧନା ବଳରେ ଓଡ଼ିଶୀ ନୃତ୍ୟର ସଂସ୍କାର ଆଣିବା ଦିଗରେ ତାଙ୍କର ରହିଛି ମହତ୍ତ୍ୱପୂର୍ଣ୍ଣ ଯୋଗଦାନ । ଓଡ଼ିଶୀ ନୃତ୍ୟ ଦିଗରେ ସେ ଯେପରି ଜଣେ ଖ୍ୟାତନାମା ନୃତ୍ୟାଙ୍ଗନା ସେହପରି ଜଣେ ଯଶସ୍ୱିନୀ ନୃତ୍ୟବିଶାରଦା ଓ ବୟାକରଣିକା । ଗୁରୁ କେଳୁଚରଣ ମହାପାତ୍ର ଓ ଗୁରୁ ମାୟାଧର ରାଉତଙ୍କ ଶିଷ୍ୟା ଭାବରେ ସୁନିପୁଣା ନୃତ୍ୟଶିଳ୍ପୀ ଓ ଆନ୍ତର୍ଜାତିକ ଖ୍ୟାତିଅର୍ଜନ କରିଥିବା ପ୍ରତିଭା । ଭାରତୀୟ ଡାକତାର ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ହେଲେ ସୁଦ୍ଧା ସେ ନୃତ୍ୟ ଚପଳଛନ୍ଦା । ନୃତ୍ୟ ସଂରକ୍ଷିକା ଅଭିନୟ ଈଶ୍ୱରୀ । ସଂପ୍ରତି ସେ ଓଡ଼ିଶା ସରକାରଙ୍କର ସଂସ୍କୃତି ବିଭାଗ ଆନୁକୂଲ୍ୟରେ ପ୍ରତିଷ୍ଠିତ 'ଓଡ଼ିଶୀ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ । ତାଙ୍କର ରଚିତ ଓଡ଼ିଶୀ ନୃତ୍ୟର ବ୍ୟାକରଣ ପୁସ୍ତକ 'ଓଡ଼ିଶୀ ନୃତ୍ୟ ସାରଣୀ' ଭାରତମୁନିଙ୍କ ନାଟ୍ୟଶାସ୍ତ୍ର ପରି ପ୍ରମାଣିତ ଓ ଉପାଦେୟ ଗ୍ରନ୍ଥ ।

1985ରେ "The Hindu"- Bangalore ଉଲ୍ଲେଖ କରିଛି । "Kum Kum's depiction of sita's narration of episodes Since her entry into Aranyas with her Consort Lord Rama but the time of her Confinement at the Ashoknivas was a delightful treat and her mimicking more eloquent than even the spoken words."

1985 "Hindustan Times" Shanta Serbijeet Singh New Delhi- ଉଲ୍ଲେଖ କରିଛନ୍ତି- Kum Kum was at one level a superb and unusual use of humour in dance. Here was Yosodha using every trick in the trade. Clown the Putomimist and the arcetypal mothers way to amuse

engage to ... and subtly subdue the young one. I enjoyed the item very much.

70th October 1987 States Man New Delhi. ଉଲ୍ଲେଖ କରିଛି । "Kum Kum as Radha Was equal to the occasion. As to abhinaya she was perfectly at ease and one adrires the subtility in it. Her face Could register conflicting emotions in a Jiffy. 3rd November- Indian Express New Delhi ଉଲ୍ଲେଖ କରିଛି - For KumKum Mohanty Communication is the key word. An Additional Secretary in the Orissa Govt. She is an officer of the Indian Postal Services and along with Sanjucta Panigrahi, a Premium Odissi dancer since 1958."

ଗୃହ ଓ ଗୃହିଣୀ :

୧୯୭୨ ମସିହାରେ କୁମ୍ କୁମ୍ ବିବାହ କରନ୍ତି । ତାଙ୍କ ସ୍ୱାମୀଙ୍କ ନାମ ଶ୍ରୀଯୁକ୍ତ ମଦନମୋହନ ମହାନ୍ତି । ମଦନ ମୋହନ ମହାନ୍ତି ଆଇ.ଏ.ଏସ୍ । କୁମ୍ କୁମ୍‌ଙ୍କ ନୃତ୍ୟ ପରି କ୍ରିକେଟ୍ ତାଙ୍କର ପ୍ରିୟ । ସେ ଜଣେ ସ୍ପୋର୍ଟସ୍ ମ୍ୟାନ୍ । ପ୍ରଶାସନ ଜୀବନ ବ୍ୟତୀତ ସ୍ପୋର୍ଟସ୍‌କୁ ଜୀବନରେ ସେ ଏକୀଭୂତ କରି ଦେଇଥିଲେ ।

ଶ୍ରୀମତୀ ମହାନ୍ତି ଜଣେ ସୁଗୃହିଣୀ । ତାଙ୍କର ଦୁଇପୁଅ । ସେ ନିଜେ ହାତରେ ବଢ଼ିପାରନ୍ତି । ରୋଷେଇ କରନ୍ତି, ଅଯଥା ଗପିବା ଅପେକ୍ଷା ଲୁଡୁ, ତାସ୍ ଖେଳିବା, ଘର ସଜାଡ଼ିବା, ସୁଏଟର ବୁଣିବା, ଆଚାର ତିଆରି କରିବା, ଝୋଟି ପକାଇବା, ପିଠାପଣା କରିବାକୁ ଭଲ ପାଆନ୍ତି । ବଡ଼ ସ୍ନେହୀ ଓ ମାତୃସୁଲଭ ତାଙ୍କର ହୃଦୟ ।

ଶାଶୁ ଶ୍ୱଶୁର ନୃତ୍ୟ ପଥରେ ଅନ୍ତରାୟ ହୁଅନ୍ତି କି ବୋଲି ଏକ ପ୍ରଶ୍ନର ଉତ୍ତରରେ ସେ କହନ୍ତି- ''ବିବାହ ପରେ ପ୍ରାୟ ଦଶବର୍ଷ ଯାଏ ମୋର ନାଚ ବନ୍ଦ ହୋଇଯାଇଥିଲା । ଶାଶୁ ଶ୍ୱଶୁର ମୋର ପ୍ରତିବନ୍ଧକ ନଥିଲେ । ସେମାନେ ଥିଲେ ବୈଷ୍ଣବ । ସେମାନେ ମୋର ନୃତ୍ୟ ଜୀବନର ଥିଲେ ମୁଗ୍ଧ ପ୍ରଶଂସକ । ମୋ ନାଚ ଦେଖିବାକୁ ସେମାନେ ଦିଘଣ୍ଟା ପୂର୍ବରୁ ଦର୍ଶକ

ଗ୍ୟାଲେରିର ପ୍ରଥମ ଧାଡ଼ିରେ ବସୁଥିଲେ । ଫାଇଲ ଗଦା ଓ ଛୁଆପିଲାଙ୍କ ଝଞ୍ଜାଳ ମୋତେ କିଛି ଦିନପାଇଁ ନୃତ୍ୟ ଜଗତରୁ ଦୂରେଇ ରଖିଥିଲା । ବିବାହ ପରେ ମୋ ନାଚ ସଂପର୍କରେ ମୋ ସ୍ୱାମୀ ଚୁପ୍ ରହିଲେ । କିଛି କହିଲେନି- ନାଚେ କି ନ ନାଚେ । ସେଇ ଅଭିମାନରେ ମୁଁ ଚୁପ୍ ହୋଇ ରହିଗଲି କିଛିକାଳ ।''

**ମାନସ ସନ୍ତାନ ଓଡ଼ିଶୀ ଗବେଷଣା କେନ୍ଦ୍ର :**

'ଓଡ଼ିଶୀ ଗବେଷଣା କେନ୍ଦ୍ର' ହେଉଛି ଶ୍ରୀମତୀ କୁମ୍ କୁମ୍ ମହାନ୍ତିଙ୍କର ମାନସୀ କନ୍ୟା । ଏହି ଅନୁଷ୍ଠାନର ପ୍ରତିଷ୍ଠା, ଭୂୟୋ ବିକାଶ ଦିଗରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ ଦଶକରେ ଅଭିନୀତ ବିଶିଷ୍ଟ ପ୍ରତିଭା ଓ ଗୁରୁମାନଙ୍କର ନୃତ୍ୟ ସଂରକ୍ଷଣ ପ୍ରଚେଷ୍ଟା, ନୃତ୍ୟ ଭୋକାବୁଲାରୀ ସୃଷ୍ଟି, ନୃତ୍ୟକୁ ଲେଖିରଖିବାର ପ୍ରଚେଷ୍ଟା, ନୂତନ ପିଢ଼ୀକୁ ଯଥାବିଧି ଶିକ୍ଷାପ୍ରଦାନ, ନୃତ୍ୟ ବ୍ୟାକରଣ ରଚନା ପ୍ରଭୃତି କ୍ଷେତ୍ରରେ ତାଙ୍କର ଭୂମିକା ସର୍ବପ୍ରଶଂସିତ । ଗୁରୁମାନଙ୍କୁ ନେଇ ସେମିନାର ଆୟୋଜନ, କମ୍ୟୁନିକେସନ୍, ଡକୁମେଣ୍ଟେସନ, ନୋଟେସନ୍ ଓ କ୍ୱାଲିଫିକେସନ କରାଇବା ତାଙ୍କର ପ୍ରମୁଖ ଭୂମିକାଥିଲା । ନୃତ୍ୟ ସମ୍ପର୍କିତ ପ୍ରାୟ ଦୁଇହଜାର ସିଡ଼ି ସୃଷ୍ଟି, ଆର୍କାଇଭସ୍ ସଂରଚନା ତାଙ୍କର ବହୁ ମୁଖୀ ପ୍ରତିଭା ପରିଚୟ । ସେ କୁହନ୍ତି- ''ନାଚ ନାଚିଦେଲେ ତାହା କ୍ଷଣକରେ ମନରୁ ଉଭେଇଯାଏ ତେବେ ତାହାର ସଂରକ୍ଷଣ ବଡ଼କଥା । ଷଷ୍ଠ ଦଶକ ଓ ସପ୍ତମ ଦଶକରେ ନୃତ୍ୟର ବୈଭବ କିପରିଥିଲା ଓ ଅଭିନୟ ଦର୍ପଣରେ ଯଦୁନାଥ ସିଂଙ୍କ ମୁଦ୍ରା ବିନିୟୋଗ ଶୈଳୀ ଇତ୍ୟାଦିକୁ ପରବର୍ତ୍ତୀ ପିଢ଼ୀ ଦେଖି ପାରିବ; ଏହା ହେଉଛି ବଡ଼ ଅଭିମୁଖ୍ୟ ।

**ଅଭିନୟ :**

ଓଡ଼ିଶୀ ନୃତ୍ୟର 'ଅଭିନୟ' କ୍ଷେତ୍ରରେ ସେ ଏକ ଅତୁଳା ଓ ଅନତିକ୍ରମଣୀୟ ନୃତ୍ୟଶିଳ୍ପୀ । ନିଜର ଅଭିନୟ ପାରଦର୍ଶିତା ସଂପର୍କରେ ସେ କହନ୍ତି- ଅଭିନୟ କେବଳ ମୁଁ ଶବ୍ଦ, ସଙ୍ଗୀତ ଓ ଭାବ ସହିତ ଏକାତ୍ମ ହୋଇ ଗତିକରେ । ଟ୍ରାନ୍ସଫର୍ମ ହେବା ବଡ଼ କଥା । ଅଭିନୟ ଫିଲିଙ୍ଗ ଉପରେ ନିର୍ଭର କରେ । ସଙ୍ଗୀତକୁ ବୁଝିନପାରିଲେ ଅଭିନୟ ମେକାନିକାଲ୍ ହୋଇଯାଏ । ଶବ୍ଦ ଓ ସଙ୍ଗୀତକୁ ବୁଝି ପାରିଲେ ଅଭିନୟ ଜୀବନ୍ତ ହୁଏ । ଗୀତ ସହିତ ତାଳ ଓ ଲୟକୁ ମୁଁ କ୍ଷଣକରେ ଠଉରେଇ ନିଏ । ତା' ଭିତରେ ମୁଁ ଗତିକରେ ।

ସୃଷ୍ଟି ସମ୍ଭାର :

(୧) ଓଡ଼ିଶୀ ନୃତ୍ୟ ସାରଣୀ ।

(୨) ନୃତ୍ୟ ଶିକ୍ଷା ବ୍ୟାକରଣ ।

(୩) ବିବିଧ ପ୍ରସଙ୍ଗରେ ରଚିତ ପ୍ରାମାଣିକ କ୍ୟାସେଟ୍ ।

(୪) ପଲ୍ଲବୀ-୭ଟି

(ଯଥା-କଳାବତୀ, ଦେଶ, ଖୁରୁବାଣୀ ଇତ୍ୟାଦି)

(୫) ଅଭିନୟ-୧୫ଟି

(ଯଥା-ପ୍ରକୃତି, ଅରଣ୍ୟ, କାତ୍ୟା, ଦାସିଆ ବାଉରୀ, କୀଚକବଦ୍ଧ, କାରଗିଲ ଇତ୍ୟାଦି)

(୬) ପ୍ରାଚୀନ ଛନ୍ଦ ଓ ଚମ୍ପୂର ବହୁ କ୍ୟାସେଟ୍

(୭) ସ୍ୱର ମାଧ୍ୟମରେ ସାହିତ୍ୟ ଶିକ୍ଷା କ୍ୟାସେଟ୍ ।

ଏବଂ ଶେଷରେ :

ଶିଶୁ ଅବସ୍ଥାରେ ସୁରେନ୍ ମହାନ୍ତିଙ୍କ ସଂଯୋଜନାରେ 'କୁମାର ଉତ୍ସବ' ଥିଲା ଶ୍ରୀମତୀ ମହାନ୍ତିଙ୍କ ପ୍ରଥମ କଳା ପରିବେଷଣର ଅଭୁଲା ସୁଯୋଗ । ସେତେବେଳକୁ ତାଙ୍କର ବୟସ ମାତ୍ର ୯ବର୍ଷ । ତଥାପି ତାହା ତାଙ୍କ ସ୍ମୃତିରେ ଏବେ ଭାସି ଉଠେ ।

'କଳା ବିକାଶ କେନ୍ଦ୍ର'ରୁ ତାଙ୍କର ନୃତ୍ୟ କଳାର ଜାହ୍ନବୀ ପ୍ରବାହିତ । କିଶୋରୀ ଜୀବନରୁ କଳାବିକାଶ କେନ୍ଦ୍ର ଆନୁକୂଲ୍ୟରେ ଜାତୀୟସ୍ତରରେ ବମ୍ବେ, କଲିକତା, ଦିଲ୍ଲୀରେ ନୃତ୍ୟ ପରିବେଷଣ କରି ଯଶସ୍ୱିନୀ । ବିଶେଷକରି କୃଷ୍ଣ ଭୂମିକାରେ ତାଙ୍କର ଅଭିନୟ ଜୀବନ୍ତ ଓ ଅଭୁଲା । କୃଷ୍ଣ ଅଭିନୟ ଏତେ ଜୀବନ୍ତ ଯେ ଭକ୍ତିପ୍ରାଣ ଦର୍ଶକ ତାଙ୍କୁ ଶ୍ରୀ କୃଷ୍ଣ ଭାବରେ ପ୍ରତ୍ୟୟ କରିନିଏ ।

ଗୁରୁ କେଳୁଚରଣ ମହାପାତ୍ରଙ୍କ ସଂଯୋଜନାରେ 'ତପସ୍ୱିନୀ' ଡ୍ୟାନ୍ସ ଡ୍ରାମା ତାଙ୍କ ଜୀବନର ଆଉ ଏକ ମହତ୍ୱପୂର୍ଣ୍ଣ ଅଭିନୟ । ଏହି ନୃତ୍ୟରେ ତାଙ୍କର ସୀତାଭୂମିକାରେ ଅଭିନୟ ତାଙ୍କୁ ସଫଳତା ପ୍ରଦାନ କରିଥିଲା । ସେ ୧୯୭୦ ମସିହାରୁ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଆନ୍ତର୍ଜାତିକ ପ୍ରଶଂସା ଲାଭ କରିଛନ୍ତି । ଇଉରୋପ,ଜାପାନ, ଇଣ୍ଡୋନେସିଆ, ସିଙ୍ଗାପୁର, ଆମେରିକା

ଓ ଇଂଲଣ୍ଡରେ ପ୍ରଦର୍ଶିତ ନୃତ୍ୟ ଜୀବନ୍ତ ଓ ସଫଳତା ପରିପୂର୍ଣ୍ଣ । ଋଷିଆରେ ପ୍ରଦର୍ଶିତ ଏକ ନୃତ୍ୟ ଅଭିନୟ ତାଙ୍କ ଜୀବନର ସବୁଠାରୁ ଥିଲା ଅବିସ୍ମରଣୀୟ ।

ସେ ବହୁ ଝଡ଼ଝଞ୍ଜା, ମାନସିକତା ଯନ୍ତ୍ରଣା ପାଇଛନ୍ତି । ମାତ୍ର ମର୍ମାହତ ହୋଇ ଭାଙ୍ଗିପଡ଼ି ନାହାଁନ୍ତି । ଶସ୍ତାନୁହେଁ, କଳାକର୍ମରେ ଗୁଣାତ୍ମକତାକୁ ସେ ପସନ୍ଦ କରନ୍ତି । ନୃତ୍ୟପରି ଲଳିତ ଓ ସମ୍ବେଦନଶୀଳ କଳା କ୍ଷେତ୍ରରେ ଯଥେଚ୍ଛାଚାର, ଅଥବା ଅବକ୍ଷୟକୁ ନାପସନ୍ଦ କରନ୍ତି ।

*ବରିଷ୍ଠ ଅଧ୍ୟାପକ,*

*ସାଲେପୁର ମହାବିଦ୍ୟାଳୟ, କଟକ*



# ପ୍ରଫେସର ଡକ୍ଟର ରାଧାନାଥ ରଥ

● *ଡକ୍ଟର ଶାନ୍ତନୁ କୁମାର ରଥ*

ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଅଧ୍ୟାପକ ଡକ୍ଟର ରାଧାନାଥ ରଥ ମନୋବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ତଥା ଏହି ବିଷୟକୁ ଲୋକପ୍ରିୟ କରିବା କ୍ଷେତ୍ରରେ ଯେପରି ଖ୍ୟାତି ଅର୍ଜନ କରିଛନ୍ତି ଜଣେ ଖ୍ୟାତନାମା ସାହିତ୍ୟିକ ଭାବରେ ମଧ୍ୟ ସେହିପରି ପ୍ରତିଷ୍ଠା ଲାଭ କରିଛନ୍ତି । ସେ ଏକାଧାରରେ ଜଣେ ଶିକ୍ଷାବିତ୍, ସଂଗଠକ ଏବଂ ପରାମର୍ଶଦାତା ତାଙ୍କର ବହୁ ପ୍ରବନ୍ଧ, ଭ୍ରମଣ ସାହିତ୍ୟ, ଗଳ୍ପ ଉପନ୍ୟାସ ଇତ୍ୟାଦି ପ୍ରକାଶିତ ହୋଇ ବିପୁଳ ପାଠକୀୟ ଆଦର ଲାଭ କରିଛି । ତାଙ୍କରି ପ୍ରଚେଷ୍ଟାରେ ଓଡ଼ିଶାରେ ମନସ୍ତତ୍ତ୍ୱ ବିଭାଗ ଆରମ୍ଭ ହୋଇଥିଲା । ସେ ଅବସର ନେଲା ବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟଳର ଏହି ବିଭାଗଟି ମନୋବିଜ୍ଞାନ କ୍ଷେତ୍ରରେ ସାରା ଭାରତରେ ସବୁଠାରୁ ବଡ଼ ଏବଂ ସର୍ବଶ୍ରେଷ୍ଠ ଶିକ୍ଷା ବିଭାଗ ତଥା ଗବେଷଣା କେନ୍ଦ୍ର ଭାବରେ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନ ଦ୍ୱାରା ସ୍ୱୀକୃତ ହୋଇ ପାରିଥିଲା । ଭାରତ ଓ ଭାରତ ବାହାରେ ବହୁ ସମ୍ମିଳନୀରେ ସେ ସଭାପତିତ୍ୱ କରିଛନ୍ତି । ଜଣେ ସୁସଂଗଠକ ହିସାବରେ ଓଡ଼ିଶାରେ ଦୁଇଥର ଭାରତୀୟ ବିଜ୍ଞାନ କଂଗ୍ରେସ ଓ ଗୋଟିଏ ଆନ୍ତର୍ଜାତିକ ମନୋବିଜ୍ଞାନ ସମ୍ମିଳନୀ ଆୟୋଜନ କରାଇଛନ୍ତି । ପୃଥିବୀର ଅଧିକାଂଶ ଦେଶ ବହୁବାର ପରିଭ୍ରମଣ କରିଛନ୍ତି । ଅବସର ନେବା ପରେ ଭରାତୀୟ ସମାଜ ବିଜ୍ଞାନୀଙ୍କ ପାଇଁ ଅତି ସମ୍ମାନନୀୟ ଫେଲୋରୂପେ ଡକ୍ଟର ରଥ ସମ୍ମାନିତ ହୋଇଛନ୍ତି । ଓଡ଼ିଶାର ସମାଜ ବିଜ୍ଞାନୀ ଓ ଭାରତର ମନୋବିଜ୍ଞାନୀଙ୍କ ମଧ୍ୟରେ ଏହି ସମ୍ମାନ ପାଇବାରେ ସେଥିଲେ ପ୍ରଥମ ଓଡ଼ିଆ ସମାଜ ବିଜ୍ଞାନୀ ।

ଜଣେ ହେତୁବାଦୀ ଭାବରେ ସାମାଜିକ କୁସଂସ୍କାର ବିରୋଧରେ ସେ ଅବିଶ୍ରାନ୍ତ ଅଭିଯାନ ଚଳାଇ ଆସିଛନ୍ତି । ବୈଜ୍ଞାନିକ ଓ ତାଙ୍କର ବିଶ୍ଳେଷଣ ଉପରେ ପର୍ଯ୍ୟବସିତ ବିପ୍ଲବାତ୍ମକ ସାମାଜିକ ଓ ରାଜନୈତିକ ପରିବର୍ତ୍ତନରେ ସେ ଗଭୀର ବିଶ୍ୱାସୀ । ତାଙ୍କଠାରେ ଥିବା ଆତ୍ମିକ ବିଶ୍ୱାସ ଓ ତାଙ୍କର ଦୈନନ୍ଦିନ କାର୍ଯ୍ୟ ପ୍ରଣାଳୀ ଭିତରେ କୌଣସି ସଂଘର୍ଷ ନାହିଁ ।

ପ୍ରଫେସର ରଥଙ୍କ ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ଗଡ଼ଠାରୁ ପ୍ରାୟ ଆଠ କିଲୋମିଟର ଦୂରରେ । ଏହାର ନାମ ତଳରାମ ପଲ୍ଲୀ । ସୁଦୀର୍ଘ, ନଭଶ୍ଚୁମ୍ବୀ କୃଷ୍ଣଗିରି ପର୍ବତମାଳା ତଳେ ଏହି ଗାଁଟି ଅବସ୍ଥିତ । ଗାଁର ଶୋଭା ଏବେ ମଧ୍ୟ ବୃଦ୍ଧି କରୁଚି ଝାଡ଼େଶ୍ୱର ବା ଧାରେଶ୍ୱର ପୀଠ- ଯାହା ଗଂଜାମ ଜିଲ୍ଲାର ଏକ ପଞ୍ଚଦେବ ଉପାସନା ପୀଠ ତଥା ଦର୍ଶନୀୟ ସ୍ଥାନ । ବିଶ୍ୱାସ କରାଯାଏ ଯେ, ଏହି ପୀଠରେ ଥିବା ରାମଚଣ୍ଡୀଙ୍କୁ ବନବାସ ସମୟରେ ସ୍ୱୟଂ ପ୍ରଭୁ ରାମଚନ୍ଦ୍ର ପ୍ରତିଷ୍ଠା କରିଥିଲେ । ଏହିଗାଁରେ ସଂପୂର୍ଣ୍ଣ ଗ୍ରାମୀଣ ତଥା ପ୍ରାକୃତିକ ପରିବେଶରେ ତାଙ୍କର ବାଲ୍ୟ ଜୀବନ କଟିଥିଲା । ସେହିଗାଁରେ ଶିକ୍ଷକଥିଲେ ତାଙ୍କ ନନା, ମାତ୍ର ସାତବର୍ଷ ବୟସରେ ସେ ହରାଇଥିଲେ ତାଙ୍କ ନନା ବୋଉଙ୍କୁ ଏବଂ ଚକର ଛେଉଣ୍ଡ ହୋଇଯାଇଥିଲେ । ଗାଁ ସ୍କୁଲରେ ପଞ୍ଚମ ଶ୍ରେଣୀଯାଏଁ ପଢ଼ା ସାରି ସେ ଅଧିକ ପଢ଼ାଉଦ୍ଦେଶ୍ୟରେ ଗଲେ ଖଲ୍ଲିକୋଟ । ବଡ଼ଭାଇ ଉଦୟନାୟଥଙ୍କ ଶ୍ୱଶୁରଘରେ ରହି ପଢ଼ିଲେ । ଖଲ୍ଲିକୋଟକୁ ଆସିବା ପରେ ସେ ସଭ୍ୟ ଜଗତର କିଛି ସଂସ୍ପର୍ଶରେ ଆସିଲେ । 'ସମାଜ' ଖବରକାଗଜ ପଢ଼ିବାର ସୁବିଧା ମିଳିଲା । ନାନା ରାଜନୈତିକ ଘଟଣା ବିଷୟରେ ଆଲୋଚନା, ଖଲ୍ଲିକୋଟ ରାଜା ଦେଶ ମିଶ୍ରଣ ଆନ୍ଦୋଳନର ଅଗ୍ରଣୀ ଥିବାରୁ ସେ ସମ୍ବନ୍ଧରେ ସଭା ସମିତି ହଉଥିଲା । ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ସେଠି ଗୁଂଜରଣ ସୃଷ୍ଟି କରୁଥାଏ । ସେଇ ବୟସରୁ ମଧ୍ୟ ରାଧାନାଥ ବାବୁ କଂଗ୍ରେସ ଆଶ୍ରମକୁ ଯାଉଥିଲେ । ରାଜନୀତିରେ ତାଙ୍କର ବହୁତ ଆଗ୍ରହ ବଢ଼ିଲା । ହୁଏତ ଠିକ୍ ପରାମର୍ଶ ପାଇ ନଥିଲେ ସେ ଜଣେ ସଚ୍ଚା କଂଗ୍ରେସ କର୍ମୀ ହୋଇ ବାହାରିଥାନ୍ତେ । କିନ୍ତୁ ଖଲ୍ଲିକୋଟର କଂଗ୍ରେସ ନେତା ଗୌରୀଶଙ୍କର ସାମନ୍ତ ତାଙ୍କୁ ପାଠପଢ଼ି ଗ୍ରାଜୁଏଟ୍ ହେବା ପାଇଁ ପରାମର୍ଶ ଦେଲେ । ଏ ବୟସରୁ ରାଜନୀତିରେ ନପଶିବା ପାଇଁ ବୁଝେଇଲେ । କିନ୍ତୁ ସେହିଦିନଠାରୁ ବିଭିନ୍ନ

ରାଜନୈତିକ ଦର୍ଶନ, ସମ୍ଭ୍ରାନ୍ତ ରାଜା, ଜମିଦାରମାନଙ୍କ ସାଧାରଣ ଲୋକଙ୍କ ପ୍ରତିଥିବା ଅବଜ୍ଞା ଭାବ, ସାଧାରଣ ଲୋକଙ୍କ ଅସହାୟତା-ଏସବୁ ସଂପର୍କରେ ତାଙ୍କର ଏକ ଧାରଣା ଜନ୍ମ ନେଇଥିଲା । ସେ ଏଗୁଡ଼ିକୁ ପ୍ରତ୍ୟକ୍ଷ ଭାବରେ ଦେଖିଥିଲେ ଏବଂ ଅଙ୍ଗେ ଲିଭେଇଥିଲେ । ୧୯୩୨ ମସିହାରେ ରାଧାନାଥଙ୍କ ଜୀବନର ଗତିରେ ଏକ ପରିବର୍ତ୍ତନ ଆସିଲା । ବଡ଼ଭାଇ ଉଦୟନାଥ ଡେପୁଟୀ ମାଜିଷ୍ଟ୍ରେଟ୍ ଚାକିରି ପାଇଲା ପରେ ତାଙ୍କୁ ବଡ଼ ଭାଇଙ୍କ ସହିତ କଟକ ଆସିବାର ସୁଯୋଗ ମିଳିଲା । ବଡ଼ ଭାଇ ଉଦୟନାଥ ଖୁବ୍ ମେଧାବୀ ଛାତ୍ରଥିଲେ ଏବଂ ଖୁବ୍ କଷ୍ଟ କରି ପାଠ ପଢ଼ିଥିଲେ । ତକିଆ ଅଭାବରୁ ମୁଣ୍ଡତଳେ ଇଟାଟିଏ ଦେଇ ଶୋଉଥିଲେ ଏବଂ ଟିଉସନ୍ କରି ପାଉଥିବା ପାଞ୍ଚଟଙ୍କା ଘରକୁ ପଠାଉଥିଲେ । ସମଗ୍ର ପରିବାର ପାଇଁ ତାଙ୍କର ନିଷ୍ଠା ଏବଂ ଅଙ୍ଗୀକାର ପ୍ରବଳଥିଲା । ଏଇ କଟକ ଯାତ୍ରାଥିଲା ରାଧାନାଥଙ୍କ ଜୀବନରେ ନୂତନ ଆଭିମୁଖ୍ୟର ନବଦିଗନ୍ତ । ୧୯୩୨ ମସିହାର ଧୂଳି ଧୂସରିତ ଗାଁ ପରି ଦିଶୁଥିବା କଟକ ସହରର ଷ୍ଟେସନ୍‌ରେ ଓହ୍ଲେଇ ଛତ୍ରବଜାର ରାସ୍ତା ଦେଇ ତଳତେଲେଙ୍ଗା ବଜାର ବଡ଼ଭାଇଙ୍କ ବସାକୁ ଯିବା ବେଳେ ରାଧାନାଥଙ୍କ ମନରେ ଅନେକ ଆଶାର ଦିଗନ୍ତ ଉନ୍ମୋଚିତ ହୋଇଯାଇ ଥିଲା । ସେଇବର୍ଷ ଜୁଲାଇ ମାସରେ ସେ ଭର୍ତ୍ତି ହେଲେ କଲେଜିଏଟ୍ ସ୍କୁଲ୍‌ରେ ସପ୍ତମ ଶ୍ରେଣୀରେ । ସେହି ଦିନରୁ କେବଳ ପାଠପଢ଼ାରେ ମନଦେଇ ସେ ସାହିତ୍ୟ, ରାଜନୀତି, ଧର୍ମଚର୍ଚ୍ଚା ଇତ୍ୟାଦିରେ ମଧ୍ୟ ଆଗ୍ରହ ଦେଲେ । ତେଣୁ ମୂଳରୁ ଜୀବନ, ସମାଜର ବ୍ୟାପକ ପରିସର ସହିତ ପରିଚିତ ହେବାର ସୁଯୋଗ ସେ ନିଜ ପାଇଁ ସୃଷ୍ଟି କଲେ । ଅଷ୍ଟମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବା ପରେ ସାହିତ୍ୟ କ୍ଷେତ୍ରରେ ତାଙ୍କର ଆଗ୍ରହ ଯଥେଷ୍ଟ ବଢ଼ିଗଲା । ଘରେ ଗୋଟିଏ ପୁସ୍ତକାଳୟ ସେ ଆରମ୍ଭ କଲେ । ସ୍କୁଲ ପଢ଼ା କାଳ ଭିତରେ ପ୍ରାୟ ହଜାର ଓଡ଼ିଆ ବହି ଦୁଇଶହଯାଏ ବଙ୍ଗଳା ଓ ଇଂରାଜୀ ବହି ରଖିଥିଲେ । ରାଧାନାଥ ନିଜେ ଏଗୁଡ଼ିକ କିଣି ଆଣିଥିଲେ । ସେ ଗୁଡ଼ିକୁ ସେ ଖାଲି ରଖୁନଥିଲେ ପଢୁଥିଲେ ମଧ୍ୟ । ଏହାପରେ ବଡ଼ଭାଇ ଉଦୟନାଥ ବସା ବଦଳେଇ ଦେଲେ କାଳୀଗଳିକୁ । ତାଙ୍କ ଘର ପାଖରେ ଥାଆନ୍ତି ବିଶ୍ୱନାଥ କର । ଏଇ ସୁଯୋଗରେ ତାଙ୍କ ପରିବାର ସହିତ ରାଧାନାଥଙ୍କର ଖୁବ୍ ଘନିଷ୍ଠତା ହୋଇଗଲା । ପ୍ରତିଭା କରଙ୍କୁ ସେ ପଢନାନୀ ଓ ସୁପ୍ରଭା କରଙ୍କୁ

ଚନ ନାନୀ ବୋଲି ଡାକୁଥିଲେ । ଏମାନେ ସମସ୍ତେ ଥିଲେ ସାହିତ୍ୟିକ । ସମସ୍ତେ ଗଳ୍ପ କବିତା ଲେଖନ୍ତି । କବି ବୈକୁଣ୍ଠ ନାଥ ପଟ୍ଟନାୟକ ତାଙ୍କ ଘରକୁ ପ୍ରାୟସବୁ ଦିନ ଆସୁଥାନ୍ତି । ସେ କଲେଜିଏଟ୍ ସ୍କୁଲ୍‌ରେ ଇଂରାଜୀ ପଢ଼ାଉଥାନ୍ତି । ଏଇସବୁ ସଂପର୍କ ରାଧାନାଥଙ୍କ ସାହିତ୍ୟିକ ପ୍ରତିଭାକୁ ପଚୋଦିତ କରିଥିଲା । କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ଅଧ୍ୟୟନ ସାଙ୍ଗକୁ ପ୍ରକୃତିକୁ ଉପଭୋଗ କରିବାର ଅନୁଭୂତି ଏହି ବାଲ୍ୟ ସମୟରୁ ହିଁ ତାଙ୍କ ବ୍ୟକ୍ତିତ୍ୱରେ ଗଭୀର ରେଖାପାତ କରିଥିଲା । ଏବେ ପର୍ଯ୍ୟନ୍ତ ତାହା ଅବ୍ୟାହତ ରହିଚି । ଜୀବନକୁ ପ୍ରକୃତିର ରହସ୍ୟମୟ ଲୀଳା ମଧ୍ୟଦେଇ ଉପଭୋଗ କରିବାର ଦର୍ଶନ ବଡ଼ ବଳଷ୍ଠ ଭାବରେ ପ୍ରତିଷ୍ଠିତ ହୋଇଗଲା ।

ସ୍କୁଲ ଛାତ୍ର ଜୀବନରୁ ଦାର୍ଶନିକ ଏବଂ ଆଧ୍ୟାତ୍ମିକ ପରୀକ୍ଷାନିରୀକ୍ଷା ରାଧାନାଥଙ୍କ ଜୀବନରେ ଆସିଥିଲା । ପ୍ରତିଦିନ ସେ ମନ୍ଦିରକୁ ଯାଉଥିଲେ । ଜପ କରୁଥିଲେ । ଭଗବଦ୍ ଗୀତା ପଢୁଥିଲେ । କାର୍ତ୍ତିକ ମାସରେ ନିରାମିଷାଶୀ ରହୁଥିଲେ । ଜନ୍ମାଷ୍ଟମୀ ଓ ଜାଗର ଦିନ ଉପବାସ କରୁଥିଲେ । ସନ୍‌ସାଇନ୍ ପଡ଼ିଆ ପାଖ ଭାଇନାଙ୍କ ଘର ଛାତ ଉପରେ ବସି ଦିଗବଳୟକୁ ଚାହିଁ ଧ୍ୟାନ କଲେ । କୃଷ୍ଣଙ୍କୁ ସଖା ଭାବରେ ପୂଜାକଲେ । କିନ୍ତୁ ପରବର୍ତ୍ତୀ ଜୀବନରେ ଏପ୍ରକାର ସାଧନା ଉପରେ ତାଙ୍କର ବିଶ୍ୱାସ ରହିଲା ନାହିଁ । ସେ ବୁଝିଲେ ଯେ ଏସବୁ ଆତ୍ମ ସୂଚନା ବା ଆତ୍ମ ନିର୍ଦ୍ଦେଶନା ଦ୍ୱାରା ହୋଇଥାଏ । ଏହାର ବାସ୍ତବିକତା କିଛି ନାହିଁ । ସମସ୍ତେ ଯାହା କହନ୍ତି ତାକୁଇ ଜଣେ ଅନୁଭବ କଲେ । ଏହା କେବଳ ଗୋଟିଏ ଭ୍ରମାତ୍ମକ ବିଶ୍ୱାସ । ଏଇ ପୃଷ୍ଠଭୂମିରେ ସେତେବେଳେ ବଡ଼ହୋଇ ଏମ୍.ଏ. ପାଠ ପଢ଼ିଲେ ସେତେବେଳେ ତାଙ୍କ ପାଖରେ ନାସ୍ତିକତା ଦେଖାଦେଲା । ପିଲାଦିନର ଏଇ ଜପ ତପ ଅଭ୍ୟାସ ପରେ ଆସନ, ପ୍ରାଣାୟମ ଓ ଧ୍ୟାନ କରିବା ଅଭ୍ୟାସରେ ପରିଣତ ହୋଇଗଲା । ଏବେ ମଧ୍ୟ ପ୍ରତିଦିନ ସକାଳେ ପ୍ରାୟ ଘଣ୍ଟାଏ ଆସନ, ପ୍ରାଣାୟାମ ଓ ଧ୍ୟାନ କରନ୍ତି ଡକ୍ଟର ରଥ । ଯେକୌଣସି ମୂର୍ତ୍ତିକୁ ଧ୍ୟାନରେ ନରଖି ଶୂନ୍ୟତା ଉପରେ ମନୋନିବେଶ କରନ୍ତି । ଏଇ ଶୂନ୍ୟତା ଉପରେ ମନୋନିବେଶ କରିବା ଖୁବ୍ ଆନନ୍ଦ ଦାୟକ । ଦିନର ସବୁ କ୍ଲାନ୍ତି, ସବୁଦୁଃଖ, ସବୁ ଅଶାନ୍ତି ଏହି ଶୂନ୍ୟତା ଭିତରେ ବିଲୀନ ହୋଇଯାଏ ।

ଖଲ୍ଲିକୋଟରେ ପଢ଼ିବାଦିନରୁ ଡଃ ରଥ ଆକୃଷ୍ଟ ହୋଇଥିଲେ ମହାତ୍ମା ଗାନ୍ଧୀ ଏବଂ ସ୍ୱାଧୀନତା ଆନ୍ଦୋଳନ ପ୍ରତି । ସ୍କୁଲରେ ପଢ଼ିଲାବେଳେ ସେ ସ୍ୱାଧୀନତା ଆନ୍ଦୋଳନ ସଂର୍କରେ ବହୁତ ପଢ଼ାପଢ଼ି କଲେ । ରାଜନୀତିରେ ସକ୍ରିୟ ଅଂଶଗ୍ରହଣ କଲେ ମଧ ରାଜନୈତିକ ଅସ୍ଥିରତା ଏବଂ ଏହାର ଲକ୍ଷ୍ୟ ବିଷୟରେ ତୀବ୍ରଭାବରେ ଅନୁଭବ କରୁଥିଲେ । ଥରେ କଲେଜିଏଟ ସ୍କୁଲରେ ଗୋଟିଏ ବିରକ୍ତ କର ଘଟଣା ଘଟିଲା । ସେ ସ୍କୁଲରେ କିଙ୍ଗ ସ୍କାଉଟ୍ ଅର୍ଥାତ୍ ସ୍କାଉଟ୍‌ମାନଙ୍କର ଯୋଗ୍ୟତାର ସର୍ବୋଚ ଶ୍ରେଣୀରେ ଥିଲେ । ଦିନେ ପୋଷାକ ପିନ୍ଧି ସ୍କୁଲକୁ ଆସିଥାନ୍ତି ଗୋଟିଏ ସ୍କାଉଟ ସମାରୋହରେ ଭାଗନେବାପାଇଁ । ସେଦିନ ସ୍କାଉଟ୍‌ମାଷ୍ଟ୍ରେ ସ୍ୱର୍ଗତ ଫଣୀନ୍ଦ୍ର ଭୂଷଣ ଦାସ ତାଙ୍କୁ ପ୍ରଧାନଶିକ୍ଷକ ରାୟ ବାହାଦୁର ବିନ୍ଧାଧର ମିଶ୍ରଙ୍କ ପାଖକୁ ଡାକିନେଲେ । ପ୍ରଧାନ ଶିକ୍ଷକ ପଞ୍ଚମ ଜର୍ଜଙ୍କର ସିଂହାସନ ଆରୋହଣ ପାଇଁ ମୁଦ୍ରିତ କେତେ ଗୁଡ଼ିଏ ଛୋଟ ଛୋଟ ପତାକା ବିକ୍ରିକରିବାକୁ ରାଧାନାଥଙ୍କ ହାତକୁ ବଢ଼ାଇଦେଲେ । କିନ୍ତୁ ରାଧାନାଥ ସଂଗେ ସଂଗେ ସେ ଗୁଡ଼ିକୁ ଫେରାଇ ଦେଇ କହିଲେ ଆମ ଦେଶର ଶତ୍ରୁ ପଞ୍ଚମ ଜର୍ଜଙ୍କ ସମ୍ମାନାର୍ଥେ ସେ କଦାପି ପତାକା ବିକ୍ରି କରିବେ ନାହିଁ । ଫଣୀ ବାବୁ ଖୁବ୍ ରାଗୀ । ସେ ରାଧାନାଥଙ୍କୁ ସେଇଠି ଠାଏ କରି ଏକ ଚାପୁଡ଼ା ମାରିଲେ । କହିଲେ ତୁମେ କିଙ୍ଗ ସ୍କାଉଟ୍ ହେଇ ଏଡ଼େ ବଡ଼ ରାଜଦ୍ରୋହୀ କଥା କହୁଚ । ଏହା ଶୁଣିବା ପରେ ରାଧାନାଥଙ୍କ ସୁପ୍ତ ରାଜନୈତିକ ଚେତନା ନାଗସାପ ପରି ଫଁ ଫଁ କରି ଉଠିଲା । ସେ ତାଙ୍କ ଜାମାରେ ଯେଉଁ ସବୁ ସ୍କାଉଟ୍ ବ୍ୟାଚ୍ ମରା ହୋଇଥିଲା ସେଗୁଡ଼ିକୁ ଛିଣ୍ଡାଇ ଦେଇ ସେମାନଙ୍କ ଆଗରେ ଫୋପାଡ଼ି ଦେଲେ ଏବଂ ଚିତ୍କାର କରି କହିଲେ ଯେ ସ୍କାଉଟ୍ ହେବା ଅର୍ଥ ଯଦି ବ୍ରିଟିଶ୍ ସରକାରଙ୍କ ସ୍ତାବକ ହେବାକୁ ହେବ ତେବେ ଏଇ ମୁହୂର୍ତ୍ତରୁ ସେ ଆଉ ସ୍କାଉଟ୍ ନୁହନ୍ତି । ସେତେବେଳକୁ ସେ ଦଶମ ଶ୍ରେଣୀର ଛାତ୍ର । ଏହି ଘଟଣାରେ ତାଙ୍କ ଆତ୍ମ ଚେତନା ଓ ସ୍ୱାଧୀନ ମନୋଭାବ ଏକ ମୁକ୍ତତାର ସ୍ୱାଦ ଲାଭକଲା ।

୧୯୩୭ ମସିହାରେ କଲେଜିଏଟ୍ ସ୍କୁଲ୍‌ରୁ ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ ରାଧାନାଥ ରେଭେନ୍‌ସା କଲେଜରେ ଆଇ.ଏ. ପଢ଼ିବା ପାଇଁ ନାମ ଲେଖାଇଲେ । ବିଷୟ ରଖିଲେ ଇତିହାସ, ତର୍କଶାସ୍ତ୍ର ଏବଂ ସଂସ୍କୃତ । ପଶ୍ଚିମ ଛାତ୍ରାବାସରେ ରହିବା ସମୟରେ ଗୋଟିଏ

ନୂଆବନ୍ଧୁତ୍ୱ ଗଢ଼ି ଉଠିଲା ଏବଂ ସାହିତ୍ୟ ଚର୍ଚ୍ଚା ଖୁବ୍ ଜମିଲା । ରବିଠାକୁର, ବର୍ଣ୍ଣାଡ଼ଶଙ୍କ ବିଷୟରେ ଖୁବ୍ ଆଲୋଚନା ହେଉଥିଲା । ଛାତ୍ରାବାସର ଦାୟିତ୍ୱରେ ଥିଲେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା । ଏହି ସମୟରେ ତାଳଦଣ୍ଡା କେନାଲରେ ଡଙ୍ଗା ଚଳାଇବା ପାଇଁ ଗୋଟିଏ ବୋଟିଂ କ୍ଲବ୍ ମଧ୍ୟ ଗଢ଼ାହେଇଥାଏ । ଛାତ୍ର ସମୟରେ ଏସବୁ ଥିରେ ବେଶୀ ସମୟ ଦେବାରୁ ଆଇ.ଏ. ପରୀକ୍ଷା ଫଳ ବିଶେଷ କରି ଭଲ ହେଲା ନାହିଁ। କୌଣସି ମତେ ସେ ପାଶ୍ କଲେ । ଏକ ଅଦ୍‌ଭୁତ ଖିଆଲରେ ସେ ପାଟଣା କଲେଜର ପ୍ରିନ୍‌ସିପାଲ୍‌ଙ୍କ ନିକଟକୁ ଏକ ଚିଠି ଲେଖିଲେ । ସେ ଚିଠିରେ ଗୋଟିଏ ଧାଡ଼ି ଲେଖିଥିଲେ ‘‘The sword of Democleus is hanging over me’’ ଆଶ୍ଚର୍ଯ୍ୟଜନକ ଭାବେ ମଧ୍ୟ ତାଙ୍କୁ ପାଟଣା କଲେଜରେ ପଢ଼ିବା ପାଇଁ ଡାକରା ଆସିଲା । ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ ଓଡ଼ିଆମାନଙ୍କୁ ପାଟଣା କଲେଜରେ ବି.ଏ. କ୍ଲାସ୍‌ରେ ପଢ଼ିବା ସୁବିଧା ମିଳୁନଥିଲା । କିନ୍ତୁ ରାଧାନାଥ ତାହା ପାଇଥିଲେ । ପାଟଣା ବିଶ୍ୱବିଦ୍ୟାଳୟରେ ପଢ଼ିବା ସମରେ ପ୍ରଗାଢ଼ ଅଧ୍ୟବସାୟ ଏବଂ କଠିନ ପରିଶ୍ରମ ଫଳରେ ସେ ପ୍ରଥମ ଶ୍ରେଣୀରେ ବି.ଏ. ପାସ୍ କଲେ । ସେ ସମୟରେ ପ୍ରଥମ ଶ୍ରେଣୀର ମୂଲ୍ୟ ଖୁବ ବେଶୀଥିଲା । ସେ ପ୍ରଥମେ ଇଂରାଜୀ ଅନର୍ସ ନେଇ ପଢୁଥିଲେ । ପରେ ଦର୍ଶନ ବିଷୟକୁ ବଦଳାଇଦେଲେ । ଯାର ଉଦ୍ଦେଶ୍ୟଥିଲା ଆଇ.ଏ. ପଢ଼ିବା ସମୟରେ ଧର୍ମପ୍ରତି ତାଙ୍କର ଯେଉଁ ସଂଦେହ ଓ ଦ୍ୱନ୍ଦାତ୍ମକ ଭାବ ଦେଖାଦେଇଥିଲା ତାର ବୌଦ୍ଧିକ ସ୍ତରରେ ସମାଧାନ ହେବା ଦରକାର ଥିଲା । ତେଣୁ ଦର୍ଶନ ଶାସ୍ତ୍ର ପଢ଼ି ଭଗବାନଙ୍କ ଅସ୍ତିତ୍ୱ ସଂପର୍କରେ ଅଧିକ ଜାଣିବା ପାଇଁ ସେ ଦର୍ଶନ ବିଷୟଟିକୁ ନେଇଥିଲେ । ସେତେବେଳକୁ ସେ ପୁରାପୁରି ନାସ୍ତିକ । ଏମ୍.ଏ. ପଢୁଥିବା ବେଳେ ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ହେଲା । ପାଟନାର ରାଜରାସ୍ତାରେ ବାହାରିଲା ବିରାଟ ପଟୁଆର । ସେଥିରେ ସାମିଲ ହେଇ ରାଧାନାଥ ପୋଲିସ୍ ଲାଠିରେ ଆହତ ହେଲେ । ବହୁ ଓଡ଼ିଆ ପିଲା ପାଟନା ଛାଡି ଓଡ଼ିଶା ଚାଲିଆସିଲେ ପୋଲିସ୍‌ର ଭୟରେ । କିନ୍ତୁ ରାଧାନାଥ ଜିଦ୍ କରି ସେଠି ରହିଲେ । ତାପରେ ଲୋକଙ୍କ ସହ ମିଶି ପୋଷ୍ଟ ଅଫିସ୍ ପୋଡିବା, ତାକତାର ଛିଣ୍ଡାଇବା, ଖୁଣ୍ଟି ଓପାଡ଼ିବା ରାସ୍ତାରେ ବଡ଼ ଗଛ କାଟି ପକାଇବା ଇତ୍ୟାଦି କାମ କଲେ । ପାଟଣାରେ ମାସେକାଳ

ଲୁଚି ରହିଲାପରେ ବସ୍‌ରେ ବିଭିନ୍ନ ବାଟଦେଇ ରାଧାନାଥ ସମ୍ବଲପୁରରେ ପହଞ୍ଚିଲେ । ସେତେବେଳେ ତାଙ୍କ ବଡ଼ଭାଇ ସେଠି ଥାଆନ୍ତି ଏସ୍.ଡି.ଓ । ପାଟନାରେ ପୋଲିସ୍ ଗୁଳିରେ ସେ ମରିଯାଇଥିବା ଖବର ଆଗରୁ ପ୍ରଚାରିତ ହୋଇଥିବାରୁ ତାଙ୍କୁ ଦେଖି ପରିବାର ବର୍ଗ ବେଶ୍ ଖୁସି ହେଲେ ।

ପଢ଼ାସରିବା ପରେ ରାଧାନାଥ ଠିକ୍ କରିଥିଲେ ଓକିଲାତି କରିବେ କିମ୍ବା ଅଧାପକ ହେବେ । କିନ୍ତୁ ବଡ଼ଭାଇଙ୍କ ପରାମର୍ଶରେ ଆନ୍ତରିକତା ନଥାଇ ଗୋଟିଏ ଚାକିରିପାଇଁ ଦରଖାସ୍ତ କଲେ । କମଶନଙ୍କ ଆଗରେ ସାକ୍ଷାତ ପାଇଁ ଉପସ୍ଥିତ ହେଲାବେଳେ କମିଶନ ସଭ୍ୟ ତାଙ୍କୁ ପ୍ରଶ୍ନକରିଥିଲେ ଯେ ଚାକିରି କଲେ ସେ ବ୍ରିଟିଶ୍ ସରକାରଙ୍କ ପାଇଁ କଣ କରିପାରିବେ । ରାଧାନାଥ ଉତ୍ତର ଦେଇଥିଲେ ଯେ ସେଲୋକଙ୍କର ସେବା କରିବା ପାଇଁ ଚାକିରି କରିବେ ବ୍ରିଟିଶର ସେବା ପାଇଁ ନୁହେଁ । ଏତିକିରେ କମିଶନ ଅବାକ୍ ହୋଇ ଆଉ କିଛି ନପଚାରି ତାଙ୍କୁ ବିଦା କରିଦେଲେ । କୌଣସି ହାକିମି ଚାକିରି ପ୍ରତି ରାଧାନାଥଙ୍କର ଘୃଣା ଭାବଥିଲା । ମୂଳରୁ ହିଁ ହାକମିମାନଙ୍କର ସାଧାରଣ ଲୋକଙ୍କ ପ୍ରତି ଥିବା ଘୃଣା ଏବଂ ଅବଜ୍ଞତା ତାଙ୍କୁ ମୂଳରୁ ବିଦ୍ରୋହୀ କରିଦେଇଥିଲେ । ସେ ସାମାନ୍ୟତମ ହାକିମୀ ଭାବଥିବା କୌଣସି ପଦବୀ ଜୀବନସାରା ଗ୍ରହଣ କଲେ ନାହିଁ । ଦୃଢ଼ତା, ଯେକୌଣସି ପରିସ୍ଥିତିରେ ସ୍ପଷ୍ଟବାଦୀତା ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ଅଙ୍ଗ ହୋଇଥିଲା । ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍.ଏରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ରାଧାନାଥ ।

୧୯୪୪ ରେ ଅଧାପକ ଏବଂ ବିବାହ । ୧୯୪୪ ଜୁଲାଇ ୩ ତାରିଖରେ ରେଭେନ୍‌ସା କଲେଜରେ ଦର୍ଶନବିଭାଗରେ ସେ ଅଧାପକ ଭାବରେ ଯୋଗଦେଲେ । ସେଇବର୍ଷ କିଛି ଦିନ ଆଗରୁ ମାର୍ଚ୍ଚ ମାସରେ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ପୁରୀର ଆର୍ତ୍ତତ୍ରାଣ ମିଶ୍ରଙ୍କ ସାନଝିଅ ସହ । ରେଭେନ୍‌ସା କଲେଜରେ ତାଙ୍କର ସହକର୍ମୀ ଥିଲେ ଅଧାପକ ରତ୍ନାକର ପତି, ଅଧାପକ ଗଣେଶ୍ୱର ମିଶ୍ର, ଛାତ୍ର ଭାବରେ ଥିଲେ ପରବର୍ତ୍ତୀ ସମୟର ଗଣିତଜ୍ଞ ତ୍ରିବିକ୍ରମ ପତି, ଦାର୍ଶନିକ ପ୍ରପତ୍ତି, ସତ୍ୟବାଦୀ ମିଶ୍ର, ନାସ୍ତିକବାଦ ସଂପର୍କରେ ଅଧାପକ ରତ୍ନାକର ପତିଙ୍କ ସହ ବହୁ ଆଲୋଚନା ହୁଏ । ଉଭୟେ ଭିନ୍ନ ମତାବଲମ୍ବୀ ହୋଇଥିଲେ ମଧ୍ୟ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ବେଶ୍ ବନ୍ଧୁତା ରହିଥିଲା ।

୧୯୪୬ ମସିହାରେ ଭାରତ ସରକାରଙ୍କଠାରୁ ବୃତ୍ତି ପାଇ ମନସ୍ତତ୍ତ୍ୱ ବିଷୟରେ ଉଚ୍ଚତର ଅଧ୍ୟୟନ ପାଇଁ ରାଧାନାଥ ବିଲାତ ଯାତ୍ରା କଲେ । ବହୁ କଷ୍ଟରେ ଆବଶ୍ୟକ କାଗଜପତ୍ର ଏବଂ ଆନୁସଂଗିକ । ଯୋଗାଡ଼କରି ସେ ବାହାରିଲେ ବିଲାତ । ବମ୍ବେରୁ ଅଗଷ୍ଟ ୧୪ ତାରିଖରେ ପାଣିଜାହାଜରେ ଯାତ୍ରା ଆରମ୍ଭ ହେଲା । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ବି.ଏ. ଶ୍ରେଣୀରେ ପଢ଼ିବା ପାଇଁ ଯଦିଓ ରାଧାନାଥ ବଛା ହୋଇଥିଲେ ନିଜ ବୁଦ୍ଧି ଏବଂ ଅଧ୍ୟବସାୟ ବଳରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରି ଏକ ବିଶେଷ ପରୀକ୍ଷା ଦେଇ ସେ ସିଧା ଡକ୍‌ଟରେଟ୍ କରିବା ପାଇଁ ମନୋନୀତ ହେଲେ ଏବଂ ଦୁଇବର୍ଷ ଭିତରେ ନିଜର ଗବେଷଣା କାର୍ଯ୍ୟ ଶେଷ କଲେ । ବିଲାତରେ ଗବେଷଣା କରିବା ସମୟରେ ସେ ବିଭିନ୍ନ ବୌଦ୍ଧିକ ସଭା ସମିତିକୁ ଯାଉଥିଲେ । ଜନପ୍ରିୟ ବିଜ୍ଞାନ ସଂପର୍କରେ ହେଉଥିବା ବକ୍ତୃତାମାଳା, ସେମିନାରମାନଙ୍କରେ ମଧ୍ୟଯୋଗ ଦେଉଥିଲେ । ଏହାଛଡା ସେ ବିଭିନ୍ନ ରାଜନୈତିକ ଦଳର ଲୋକମାନଙ୍କ ସହ ଭେଟୁଥିଲେ । ଏହି ସମୟରୁ ହିଁ କମ୍ୟୁନିଷ୍ଟମାନଙ୍କ ପ୍ରତି ତାଙ୍କର ସମ୍ମାନବୋଧ ଜାଗ୍ରତ ହେଲା । କାରଣ କମ୍ୟୁନିଷ୍ଟମାନେ କହୁଥିଲେ ଇଂରେଜମାନେ ଭାରତକୁ ଅସଲ ଅର୍ଥନୈତିକ ସ୍ୱାଧୀନତା ଦେଇ ନାହାଁନ୍ତି କେବଳ ରାଜନୈତିକ ସ୍ୱାଧୀନତା ଦେଇ ନିଜହାତରେ ଅର୍ଥନୈତିକ ଚାବି ରଖିଛନ୍ତି- ଯାହା ପ୍ରକୃତରେ ସତଥିଲା । ବିଲାତି ଅନୁଭୂତି ରାଧାନାଥଙ୍କ ବ୍ୟକ୍ତିତ୍ୱରେ ଏକ ଆନ୍ତର୍ଜାତିକତାର ସ୍ପର୍ଶ ଏକ ଆଭିମୁଖ୍ୟ ଆଣିଦେବାରେ ସାହାଯ୍ୟ କଲା । ଏକ ବିଶ୍ୱମାନବୀୟତାର ସ୍ପନ୍ଦନ ତାଙ୍କୁ ଅନୁପ୍ରାଣିତ କଲା । ତାଙ୍କର ବାଲ୍ୟକାଳର ଭଗବଦ୍ ବିଶ୍ୱାସ ନୂତନ ମାନବୀୟ ପ୍ରେମରେ ପରିଣତ ହେଲା । ଏହି ବିରାଟ ଦର୍ଶନହିଁ ତାଙ୍କ ଜୀବନର ଗୋଟିଏ ପ୍ରଧାନ ଆତ୍ମିକ ଅନୁଭୂତି ଯାହା ଆଜି ପର୍ଯ୍ୟନ୍ତ ତାଙ୍କୁ ଆତ୍ମବିଶ୍ୱାସୀ କରିପାରିଛି ଏବଂ ସାମଗ୍ରିକ ଜୀବନକୁ ଏଇ ସୁନ୍ଦର ପୃଥିବୀକୁ, ଧର୍ମ, ବର୍ଣ୍ଣ, ଜାତି ଓ ଦେଶର ବହୁ ଊର୍ଦ୍ଧ୍ୱରେ ଥିବା ଆଦିମାନବ ଆତ୍ମାକୁ ଭଲ ପାଇବାରେ ଅଫୁରନ୍ତ ଶକ୍ତି ଯୋଗାଇ ପାରିଛି । ନାସ୍ତିକ ଭାବରେ ସେ ଅନୁଭବ କଲେ ଯଦି ଭଗବାନ ଥାଆନ୍ତି ତେବେ ମଣିଷହିଁ ଭଗବାନ । ଯୁଗଯୁଗ ଧରି ବିରାଟ ଶୋଭାଯାତ୍ରାରେ ଚାଲିଥିବା ଜଣକ ହେଉଛି ଏଇ ବିରାଟ ଶକ୍ତିର ସ୍ରୋତ ।

ବିଲାତରୁ ମନସ୍ତତ୍ତ୍ୱରେ ଡକ୍ଟରେଟ୍ କରି ରାଧାନାଥ ୧୯୪୯ମାର୍ଚ୍ଚ ମାସରେ ଫେରିଆସିଲେ କଟକ । ଏଣିକି ଦର୍ଶନ ପଢ଼ାଇବାରେ ତାଙ୍କର ନୂଆ ଦୃଷ୍ଟିକୋଣ ଦେଖାଦେଲା । ସେ ପଥମେ ଲେଖାଥିବା ବିଷୟ ଗୁଡ଼ିକୁ ଅଧଘଣ୍ଟା ପଢ଼ାନ୍ତି ଏବଂ ପରବର୍ତ୍ତୀ ୨୦ ମିନିଟ୍‌ରେ ସେ ଗୁଡ଼ିକ କିପରି ଅଯୌକ୍ତିକ ସେ ବିଷୟରେ ଆଲୋଚନା କରନ୍ତି । ଏତିକି ବେଳେ ସେ 'ଆମର ଭୁଲ କେଉଁଠି'ଶିରୋନାମରେ କେତେ ଗୁଡ଼ିଏ ଧାରାବାହିକ ଲେଖା ଦୈନିକ 'ସମାଜ'ରେ ଲେଖୁଥିଲେ । ସେଥିରେ ବ୍ରିଟିଶ ଶାସନ ଢ଼ାଞ୍ଚାରେ ତିଆରି ଆମର ଅମଲାତାନ୍ତ୍ରିକ ସଂସ୍ଥା କିପରି ପ୍ରବଞ୍ଚିତ ହୋଇଛି ସେ ବିଷୟରେ ଲେଖାଯାଉଥିଲା, ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏ ଲେଖା ଗୁଡ଼ିକ ପଢ଼ି ଡଃ ରଥଙ୍କୁ ସାଧୁବାଦ ଜଣାଇଥିଲେ ଏବଂ ତାଙ୍କ ପାଖକୁ ଯେତେ ଯୁବକ ଯାଉଥିଲେ ସେମାନଙ୍କୁ ଏ ଲେଖା ଗୁଡିକ ପଢ଼ିବାକୁ କହୁଥିଲେ । ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଚୌଧୁରୀଙ୍କ ସହ ଡଃ ରାଧାନାଥ ରଥଙ୍କ ଗଭୀର ସଂପର୍କଥିଲା ।

ଔପନିବେଶକ ଓ ସାମନ୍ତବାଦୀ ଶାସନ ସଂସ୍ଥା ତଥା ପଶ୍ଚାଦ୍ ମୁଖ୍ୟ ସାମାଜିକ ପ୍ରତିଷ୍ଠାନ ଓ ପ୍ରତିକ୍ରିୟାଶୀଳ ନେତୃତ୍ୱ ବିରୋଧରେ ତାଙ୍କର ମତାମତ ସ୍ପଷ୍ଟ ଭାବରେ ପ୍ରକାଶ କରିବା ଏବଂ ଯେତେବଡ଼ ପ୍ରତିଷ୍ଠିତ ବ୍ୟକ୍ତି ହୁଅନ୍ତୁ ତାଙ୍କ ସହିତ ଯୁକ୍ତି କରିବା ବା ସେମାନଙ୍କର ଜନବିରୋଧୀ କାର୍ଯ୍ୟ କଳାପ ବିରୋଧରେ ସର୍ବସାଧାରଣ ମତ ପ୍ରକାଶ କରିବାର ଦୃଢ଼ ମନୋବୃତ୍ତି ତାଙ୍କଠାରେ ଦେଖାଦେଇଥିଲା । ବହୁତ ଭାବିଚିନ୍ତି ସେ ଏପ୍ରକାର ଆଭିମୁଖ୍ୟ ଗ୍ରହଣ କରିଥିଲେ । କୌଣସି ସ୍ୱାର୍ଥ ସର୍ବସ୍ୱ ମହତ୍ତ୍ୱାକାଂକ୍ଷା ନରଖି ସେ ସ୍ପଷ୍ଟବାଦୀ ହେବାକୁ ସିଦ୍ଧାନ୍ତ କରିଥିଲେ । ଏଥିପାଇଁ ସବୁଠୁ ବେଶୀ ସାମନ୍ତବାଦୀ ଓଡ଼ିଶାରେ ଶାସନ ଗୋଷ୍ଠୀଙ୍କର କୋପଦୃଷ୍ଟିରେ ତାଙ୍କୁ ସାରାଜୀବନ ରହିବାକୁ ହେଲା ।

୧୯୪୯ ମସିହା ଜୁଲାଇ ମାସରେ ବିଜ୍ଞାନ ପ୍ରଚାର ସମିତି ନାମରେ ଗୋଟିଏ ଅନୁଷ୍ଠାନ ଆରମ୍ଭ କଲେ ଡଃ ରଥ । ଡକ୍ଟର ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ମେଡ଼ିକାଲ କଲେଜ ବାସଭବନରେ ଏହାର ପ୍ରାରମ୍ଭିକ ବୈଠକ ଆୟୋଜନ ହୋଇଗଲା । ସେଥିରେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର ରାଇକୃଷ୍ଣ ମହାନ୍ତି ଓ ଡକ୍ଟର ଜୟକୃଷ୍ଣ ମହାନ୍ତି ଯୋଗଦେଇଥିଲେ ।

ବିଜ୍ଞାନଯୁଗରେ ଲୋକଙ୍କ ପାଖରେ ବିଜ୍ଞାନରେ ବାର୍ତ୍ତା ପହଞ୍ଚାଇବା ଲାଗି ଏ ଅନୁଷ୍ଠାନ ଆରମ୍ଭ ହେଲା । ଡଃ ରଥ ଏହାର ସଂପାଦକ ଭାବରେ ବହୁବର୍ଷ କାର୍ଯ୍ୟ କରିଥିଲେ । ଏହି ସମିତିର କାର୍ଯ୍ୟ ଏବଂ ପ୍ରୋତ୍ସାହନ ଫଳରେ ବହୁ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି ହୋଇଥିଲା । ଏହି ସମିତିର କାର୍ଯ୍ୟ ଏବଂପ୍ରୋତ୍ସାହନ ଫଳରେ ବହୁ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି ହୋଇଥିଲା । ପରବର୍ତ୍ତୀ ସମୟରେ ଜନପ୍ରିୟ ବିଜ୍ଞାନ ସାହିତ୍ୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଗୋଟିଏ ସ୍ୱର୍ଣ୍ଣପଦକର ପ୍ରତିଷ୍ଠାପାଇଁ ଡଃ ରଥ ଅର୍ଥ ବ୍ୟବସ୍ଥା କରିଥିଲେ । ପ୍ରତିବର୍ଷ ଲୋକପ୍ରିୟ ବିଜ୍ଞାନ ସୃଷ୍ଟି କରୁଥିବା ବିଶିଷ୍ଟ ଲେଖକଙ୍କୁ ଏହି ସ୍ୱର୍ଣ୍ଣ ପଦକ ଦିଆଯାଉଛି ।

୧୯୪୯ରେ ବିଲାତରୁ ଫେରିବା ପରେ ୧୯୫୩ ପର୍ଯ୍ୟନ୍ତ ଡଃ ରଥ ଦର୍ଶନ ବିଭାଗରେ ପଢ଼ାଉଥିଲେ । କିନ୍ତୁ ସ୍ୱତନ୍ତ୍ର ମନୋବିଜ୍ଞାନ ବିଭାଗ ଖୋଲିବା ପାଇଁ ଉଦ୍ୟମ ଜାରି ରଖିଥିଲେ । ତତ୍କାଳୀନ ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ଡଃ ବାନାର୍ଜୀ ଏବଂ ଡିପିଆଇ ବଳଭଦ୍ର ପ୍ରସାଦଙ୍କ ଉଦ୍ୟମରେ ମନୋବିଜ୍ଞାନ ବିଭାଗ ଖୋଲିଲା । ୧୯୫୩ରେ ସ୍ନାତକ ଏବଂ ୧୯୫୮ରେ ସ୍ନାତକୋତ୍ତର ବିଭାଗ ଖୋଲିଲା । ଏହି ବିଭାଗ ୧୯୮୦ ମସିହାବେଳକୁ ଭାରତର ଏକମାତ୍ର ସର୍ବବୃହତ୍ ଓ ଶ୍ରେଷ୍ଠ ମନସ୍ତତ୍ତ୍ୱ ବିଭାଗ ରୂପେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ଦ୍ୱାରା ସ୍ୱୀକୃତି ପାଇଲା । ଶିକ୍ଷାଦାନ ଓ ଗବେଷଣା କ୍ଷେତ୍ରରେ ଭାରତର ସର୍ବପ୍ରଥମ ଅଗ୍ରଗାମୀ ବିଭାଗ ରୂପେ ପରିଚିତ ହେଲା । ୧୯୫୩ ମସିହାରେ ପ୍ରଥମ ମନୋବିଜ୍ଞାନ ସ୍ନାତକ ବିଭାଗ ସରକାରୀ ସ୍ତରରେ ରେଭେନ୍‌ସା କଲେଜର ଆରମ୍ଭ ହେଲା । ମନୋବିଜ୍ଞାନ ପାଠ୍ୟକ୍ରମକୁ ସଂପୂର୍ଣ୍ଣ ରୂପେ ବୈଜ୍ଞାନିକ ଭିତ୍ତିରେ ଏବଂ ଆଧୁନିକ ପ୍ରଣାଳୀରେ ପଢ଼ାଇବା ପାଇଁ ଏହି ବିଭାଗର ପ୍ରଥମରୁ ହିଁ ଉଦ୍ୟମ ହୋଇଥିଲା । ତେଣୁ ସାରାଭାରତରେ ଏହା ଏକ ପ୍ରଗତିଶୀଳ ଏବଂ ଆଧୁନିକ ବିଭାଗ ରୂପରେ ଖ୍ୟାତି ଅର୍ଜନ କରିଥିଲା । ମୋଟାମୋଟି ଭାବରେ ଓଡ଼ିଶାରେ ମନୋବିଜ୍ଞାନ ଶିକ୍ଷାର ପ୍ରସାର କରାଇବାରେ ଡଃ ରଥ ପଥ ପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୫୮ରେ ସ୍ନାତକୋତ୍ତର ମନୋବିଜ୍ଞାନ ବିଭାଗ ରେଭେନ୍ସା କଲେଜରେ ଆରମ୍ଭ ହୋଇ ୧୯୬୨ ମସିହା ଯାଏଁ ସେଠାରେ ହିଁ ଚାଲିଥିଲା ।

ଶିକ୍ଷାଦାନ ପ୍ରତି ପ୍ରଗାଢ଼ ଆଗ୍ରହ ହେତୁ ରାଧାନାଥବାବୁ କୌଣସି ଶିକ୍ଷା ପ୍ରଶାସକ ପଦବୀ ଜୀବନ ସାରା ଗ୍ରହଣ କରିନଥିଲେ । ଅଧ୍ୟକ୍ଷ ପଦବୀକୁ ସେ ନିଜଆଡୁ ଅସ୍ୱୀକାର କରିଥିଲେ ।

ବିଲାତରୁ ଫେରିବାପରେ କଟକରେ ଘରଖଣ୍ଡେ କରିବାପାଇଁ ଡଃ ରଥ ବହୁସ୍ଥାନ ବୁଲିଲେ । ବର୍ତ୍ତମାନ ଯେଉଁ ସ୍ଥାନରେ ଘର କରିଛନ୍ତି ସେ ସ୍ଥାନକୁ ସେ ଦେଖିଥିଲେ ୧୯୪୯ ମସିହାରେ । ସେ ସ୍ଥାନ ଏତେ ଦୁର୍ଗମ ଥିଲା ଯେ ସେଠି ଘର କରିବାପାଇଁ ସାହାସ ହୋଇନଥିଲା ସେତେବେଳେ । ସେ ରାସ୍ତାରେ ଲୋକ ଯିବାକୁ ଡରୁଥିଲେ । ସନ୍ତସନ୍ତିଆ, କିଆବୁଦା ଭିତରେ ସେ ଜାଗା । ଏହି ଅବସ୍ଥାରେ ଜଣେ ଜାଗା ଦଲାଲ ତାଙ୍କୁ ନେଇ ସେ ଜାଗାରେ ପହଞ୍ଚାଇ ଦେଲା । ପାଣି ଦଲ ଦଲ ବୋଡାସାପ ଅଧ୍ୟୁଷିତ, କଇଁଫୁଲ ଫୁଟିଥିବା, କିଆବାଡ଼ ଭିତରେ ଜାଗା ଦେଖି ଡଃ ରଥ ଡରିଗଲେ । ସେ ଜାଗା କିଣିବାର ଆଶା ଛାଡିଲେ । ଦୈବଯୋଗକୁ ୧୯୫୨ ମସିହାରେ ସେହି ଜାଗାଟିକୁ ହିଁ ତାଙ୍କୁ କିଣିବାକୁ ହେଲା । ଏହାକୁ ହିଁ କୁହାଯାଏ ଯୋଗ । ଏଗାର ହଜାର ଟଙ୍କାରେ କିଣାଗଲା ସେଜାଗା । ପାଖାପାଖି ଦୁଇଏକର ଜମି । ଗୋଟିଏ ସପ୍ତବାର୍ଷିକ ଯୋଜନାରେ ଜାଗାର ଉନ୍ନତି ହେଇ ଘରତିଆରି ହେଲା । ଆଜି ସେ ସ୍ଥାନରେ ଫୁଲ, ଫଳର ବଗିଚା, ପୋଖରୀ, ଘର ସୁନ୍ଦର ପରିବେଶ ଯାହା କିଛି ଅଛି ସେ ସମସ୍ତ ଡଃ ରଥଙ୍କ ପ୍ରଗାଢ଼ ନିଷ୍ଠା, ପରିଶ୍ରମ, ସାହସ ଏବଂ ରୁଚିର ଫଳ । କେବଳ ନିଜ ଘର କରିବା ନୁହେଁ ସାଆନ୍ତ ସାହି ଅଞ୍ଚଳର ବହୁ ଉନ୍ନତି କରିବାରେ ଡଃ ରଥଙ୍କର ଯୋଗଦାନ ଥିଲା ।

୧୯୬୨ ମସିହାରେ ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନର ଆୟୋଜନ ଡଃ ରାଧାନାଥ ରଥଙ୍କ ଜୀବନର ଏକ ଉଲ୍ଲେଖନୀୟ ଘଟଣା । ଅଢ଼େଇ ହଜାର ସଭ୍ୟ ଯୋଗ ଦେବାକୁ ଥିବା ଏହି କଟକ ଅଧିବେଶନ ଆୟୋଜନ କରିବା ଅତ୍ୟନ୍ତ କଷ୍ଟକର ମନେ ହେଉଥିଲା । ସେତେବେଳେ କଟକରେ ବହୁ କଥାରେ ଅଭାବ । ଭଲ ହୋଟେଲ ନାହିଁ, ରହବା ପାଇଁ ଏତେ ଜାଗା ନାହିଁ । କିନ୍ତୁ କରିବା ପାଇଁ ନିଷ୍ପତ୍ତି ହୋଇଥିବାରୁ କରିବାକୁ ହବ । କୁଳପତି ଡକ୍ଟର ପରିଜା ଏହା କରିବା ପାଇଁ ନିଷ୍ପତ୍ତି ନେଇ ସାରିଥାନ୍ତି ଏବଂ ଆୟୋଜନ କରିବା ପାଇଁ ଡକ୍ଟର ରଥଙ୍କ ଉପରେ ଦାୟିତ୍ୱ

ପଡ଼ିଲା । କାରଣ ସେଥିଲେ ଏହି କଂଗ୍ରେସର ରାଜ୍ୟ ସଂପାଦକ । ବାରହଜାର ଲୋକଙ୍କ ପାଇଁ ବସିବା ବ୍ୟବସ୍ଥା ପାଇଁ ଲକ୍ଷେ ବର୍ଗଫୁଟ୍ ତାରପୋଲିନ୍ ଏବଂ ବାର ହଜାର ଚୌକି ୧୯୬୨ ମ ସିହାରେ କଟକ ସହରରେ ଯୋଗାଡ଼ କରିବା ଯେ କି କଷ୍ଟକର ତାହା ସହଜରେ ଅନୁମେୟ । ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏଇ ଅଧିବେଶନକୁ ଉଦ୍‌ଘାଟନ କରିବାରଥାଏ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ବିଜୁ ପଟ୍ଟନାୟକ । ତାଙ୍କରି ସହଯୋଗରେ ଡଃ ରଥ ଏକାର୍ଯ୍ୟରେ ଆଗେଇଥିଲେ ଏବଂ ସଫଳ୍ ମଧ ହୋଇଗଲେ । କଟକ ବିଜ୍ଞାନ କଂଗ୍ରେସ ଆୟୋଜନ ତାଙ୍କ ଜୀବନର ସଂଗଠନିକ କୃତିତ୍ୱର ଗୋଟିଏ ମୁଖ୍ୟ ମାଇଲ ଖୁଣ୍ଟ ହୋଇ ରହିଗଲା ।

ପ୍ରାଥମିକ ଏବଂ ମାଧମିକ ଶିକ୍ଷା ପରିଷଦର ଜଣେ ପରାମର୍ଶଦାତା ଭାବରେ ପାଠ୍ୟପୁସ୍ତକ ପ୍ରଣୟନ, ପାଠ୍ୟ ଖସଡା ପ୍ରସ୍ତୁତି ଇତ୍ୟାଦି କ୍ଷେତ୍ରରେ ଡଃ ରଥଙ୍କ ଉଲ୍ଲେଖନୀୟ ଅବଦାନ ରହିଥିଲା । ପାଠ୍ୟପୁସ୍ତକ ଜାତୀୟ କରଣ କରିବା ଦିଗରେ ସେ ଅଗ୍ରଗାମୀ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ଓଡ଼ିଶାର ପ୍ରକାଶକମାନଙ୍କ ବିଷଦୃଷ୍ଟିରେ ତାଙ୍କୁ ପଡିବାକୁ ହୋଇଥିଲା । କିନ୍ତୁ ସେଥିକୁ ଖାତିର ନକରି ସେ ଏକ୍ଷେତ୍ରରେ ଆଗେଇଗଲେ ଏବଂ ସଫଳ ମଧ ହେଲେ ।

ଡଃ ରାଧାନାଥ ରଥଙ୍କ ଜୀବନର ଆଉ ଏକ ଉଲ୍ଲେଖନୀୟ ଘଟଣା ହଉଚି ସାମ୍ମୁଖ୍ୟ ପତ୍ରିକାର ପ୍ରକାଶନ । କଟକରେ ବୌଦ୍ଧିକ ବାତାବରଣର ବିକାଶ ପାଇଁ ଏଭଳି ଏକ ପ୍ରତିକାର ଆବଶ୍ୟକତା ଅନୁଭବ କରି ୧୯୬୬ ମସିହାରେ ଏହାର ପ୍ରକାଶନ ଆରମ୍ଭ ହେଲା । ଏଥିରେ ଲୋକପ୍ରିୟ ବିଜ୍ଞାନ, କଳା ଓ ସାହିତ୍ୟ, ଜାତୀୟ ଏବଂ ଆନ୍ତର୍ଜାତୀୟ, ରାଜନୈତିକର ଖେଳ କସରତ, ମନସ୍ତାତ୍ତ୍ୱିକ ପ୍ରଶ୍ନୋତ୍ତର, ସାଂସ୍କୃତିକ ଓ ସାମାଜିକ ସମସ୍ୟା ପ୍ରଭୃତି ବିଭିନ୍ନ ବିଷୟରେ ଲେଖାମାନ ପ୍ରକାଶ ପାଇଲା । ଏପତ୍ରିକାର ଲକ୍ଷ୍ୟଥିଲା ସମାଜବାଦ ପ୍ରତିଷ୍ଠା ଲାଗି କନିଷ୍ଠ ଚେତନା ଓ କର୍ମପ୍ରେରଣା ସୃଷ୍ଟି କରିବା, ଚିନ୍ତାଧାରା ଓ ଦୈନନ୍ଦିନ କାର୍ଯ୍ୟକଳାପରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ଆଭିମୁଖ୍ୟର ବିକାଶ, ସାମାଜିକ ଓ ଶିକ୍ଷ କ୍ଷେତ୍ରରେ ବିଜ୍ଞାନର ପ୍ରସାର ଓ ପ୍ରୟୋଗ, ସମସ୍ତ କୁସଂସ୍କାର, ସାଂପ୍ରଦାୟିକତା ପ୍ରଭୃତି ସଂକୀର୍ଣ୍ଣତା ବିରୋଧରେ ଧାରାବାହିକ ଅଭିଯାନ, ବିଶ୍ୱଶାନ୍ତି ପ୍ରତିଷ୍ଠା ଲାଗି ବିଶ୍ୱଜନତାର ଐତିହାସିକ

ସଂଗ୍ରାମ ସହିତ ସହଯୋଗ ଏବଂ ଗଭୀର ମାନବିକତା ଉପରେ ପ୍ରତିଷ୍ଠିତ ସାହିତ୍ୟ ଓ କଳାର ସୃଷ୍ଟି ଓ ପ୍ରସାର । ନିରବଚ୍ଛିନ୍ନ ଭାବରେ ଦୀର୍ଘ ପାଞ୍ଚବର୍ଷ କାଳ ସାମ୍ମୁଖ୍ୟ ପ୍ରକାଶ ପାଇବା ପରେ ଏହାବନ୍ଦ ହୋଇଗଲା । ଅନେକ ଏହାକୁ ଏକ ସରକାର ବିରୋଧୀ ପତ୍ରିକା ଭାବରେ ଅପପ୍ରଚାର କରାଇଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟକୁ କଟକ ସହରରେ ସ୍ଥାପନା କରିବା ପାଇଁ ପ୍ରବଳ ଉଦ୍ୟମ କରିଥିଲେ ଡଃ ରଥ । ତତ୍‌କାଳୀନ କୁଳପତି ଡଃ ପରିଜା ମଧ ଏହାର ଦୃଢ଼ ସମର୍ଥକ ଥିଲେ । ଏଥିପାଇଁ ଜାଗା ଦେଖା ମଧ ସରିଥିଲା । କିନ୍ତୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଚାହିଁଲେ ଏହା ଭୁବନେଶ୍ୱରରେ ହେଉ ଏବଂ ସେହି ଅନୁସାରେ ଏହା ଭୁବନେଶ୍ୱରରେ ହେଲା । ଡଃ ରଥଙ୍କ ସ୍ପଷ୍ଟବାଦୀତା ଏବଂ ଦୃଢ଼ ଆତ୍ମ ସମ୍ମାନବୋଧ ହେତୁ ସେ କେବେ ମଧ କାହାଆଗରେ ଗୋଡ଼ ଭାଙ୍ଗି ଠିଆ ହେବାକୁ ପସନ୍ଦ କରିନଥିଲେ । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟର ସବୁଠାରୁ ବରିଷ୍ଠ ପ୍ରଫେସର ଏବଂ ସମସ୍ତ ଯୋଗ୍ୟତା ଥିବା ସତ୍ତ୍ୱେ ସେ କୁଳପତି ହେବାରୁ ବଞ୍ଚିତ ହୋଇଥିଲେ । ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ପଦ ତାଙ୍କୁ ଯଚା ଯାଇଥିଲେ ମଧ ତାକୁ ସେ ଗ୍ରହଣ କରି ନଥିଲେ । କାରଣ କୌଣସି ଅନ୍ୟ ବିଶ୍ୱବିଦ୍ୟାଳୟର କୁଳପତି ହେବା ଅପେକ୍ଷା ନିଜ ବିଭାଗକୁ ଏକ ଅଗ୍ରଣୀ ପ୍ରତିଷ୍ଠାନରେ ପରିଣତ କରିବାରେ ତାଙ୍କର ଧାନ ବେଶୀ କେନ୍ଦ୍ରିତଥିଲା । କୁଳପତି ନହୋଇ ମଧ୍ୟ ସେ ତା ସହ ସମକକ୍ଷ ଜାତୀୟ ଫେଲୋଭାବରେ ମନୋନୀତ ହେଲେ ଅବସର ପରେ । ଏହି ମର୍ଯ୍ୟାଦାବନ୍ତ ପଦବୀ ଲାଭ କରିବାରେ ସେ ଥିଲେ ଓଡ଼ିଶାରେ ପ୍ରଥମ ଏବଂ ମନୋବିଜ୍ଞାନୀ ବିଷୟରେ ଭାରତରେ ପ୍ରଥମ ।

ଅଧିକ ଅଧୟନ, ଗବେଷଣା, ଭାଷଣ, ଅନୁଧ୍ୟାନ ଇତ୍ୟାଦି କାର୍ଯ୍ୟରେ ଡଃ ରଥ ପୃଥିବୀର ବହୁ ଦେଶ ଭ୍ରମଣ କରିଛନ୍ତି । ସେଦେଶର ସଂସ୍କୃତି, ଲୋକଚରିତ୍ରର ଗଭୀର ଅଧ୍ୟୟନ ଫଳରେ ତାଙ୍କ ବ୍ୟକ୍ତିତ୍ୱର ଏକ ସାର୍ବଜନୀନ ଏବଂ ମହାମାନବୀୟ ଦିଗ ଉନ୍ମୋଚିତ ହୋଇଛି ।

୧୯୮୧ ମସିହା ମାର୍ଚ୍ଚ ମାସରେ ଉତ୍କଳବିଶ୍ୱବିଦ୍ୟାଳୟ ମନୋବିଜ୍ଞାନ ବିଭାଗ ଯାହାକି ଏକ ଅଗ୍ରଣୀ ଗବେଷଣା ପ୍ରତିଷ୍ଠାନରେ ପରିଣତ ହୋଇ ସାରିଥିଲା । ତାର ପ୍ରଫେସର ପଦରୁ ଅବସର ନେଲେ ଡଃ ରଥ । ତାଙ୍କ ପ୍ରଚେଷ୍ଟାରେ ଏହି ବିଭାଗ ଭାରତର ସର୍ବଶ୍ରେଷ୍ଠ ମନୋବିଜ୍ଞାନ ବିଭାଗ ରୂପେ

ଖ୍ୟାତି ଅର୍ଜନ କରିଥିଲା । ବିଭାଗରେ ଅଧ୍ୟାପନା ପାଇଁ ୧୮ଜଣ, ଗବେଷଣା ପାଇଁ ୩୪ଜଣ ଏବଂ ଅନ୍ୟାନ୍ୟ ସାହାଯ୍ୟକାରୀ କର୍ମଚାରୀ ୧୬ଜଣଥିଲେ । ବିଭାଗ ସହିତ ବହୁବର୍ଷର ଆସକ୍ତିର ଅବସାନ ହେଲା ପରେ ଖୁବ୍ ଆନନ୍ଦରେ ଅଛନ୍ତି ଡଃ ରଥ । ଅବସର ନେବାର ଅବସାଦ ଆଦୌ ନାହିଁ । ଅବସର ତାଙ୍କ ପାଇଁ ହେଇଯାଇଛି ବନ୍ଧନରୁ ମୁକ୍ତି । ସାରା ଜୀବନ ସେ କାମ କରିଛନ୍ତି । ଆନନ୍ଦର ସହ କରିଛନ୍ତି, ଅପ୍ରୀତିକର ଜଞ୍ଜାଳ ବୋଲି କୌଣସି କଥାକୁ ଭାବି ନାହାନ୍ତି । ଯେତେ କଷ୍ଟ କାମ ହେଲେ ମଧ୍ୟ ତା ସହିତ ମୁହାଁ ମୁହିଁ ହୋଇଛନ୍ତି । ସବୁପ୍ରକାର ଆହ୍ୱାନକୁ ସମ୍ମୁଖୀନ ହେବାରେ ସାର୍ଥକତା ଏବଂ ଆନନ୍ଦ ଅନୁଭବ କରିଛନ୍ତି । ସମୟାନୁବନ୍ଧ କାର୍ଯ୍ୟକ୍ରମ ବନ୍ଧନରୁ ମୁକ୍ତି ପାଇଲା ପରେ ସେ ଭାରତୀୟ ପରମ୍ପରାର ମୁକ୍ତ ଏବଂ ଅନାସକ୍ତ ବାନପ୍ରସ୍ଥ ଜୀବନର ସ୍ୱାଦ ଅନୁଭବ କରିପାରିଛନ୍ତି । ତାଙ୍କ ବାରଣ୍ଡାରେ ବସି ସୂର୍ଯ୍ୟ, ଚନ୍ଦ୍ର, ତାରାର ଉଦୟ ଅସ୍ତ ତାଙ୍କ ହାତରେ ବଢ଼ି ଉଠିଥିବା ଆମ୍ବ, ନଡ଼ିଆଗଛର ପତ୍ର, ଫୁଲ ତାଳ ଉହାଡ଼କୁ ଘଣ୍ଟା ଘଣ୍ଟା ଧରି ଚାହିଁ ବସିବାରେ ବିପୁଳ ଆନନ୍ଦ ଲାଭ କରୁଛନ୍ତି । ରହସ୍ୟାବୃତ୍ତ ମୃତ୍ୟୁର ଗଭୀର ଚିନ୍ତନରେ ଅଧ୍ୟାତ୍ମିକ ଉପଲବ୍ଧି ଲାଭ କରୁଛନ୍ତି ।

ଅଦମ୍ୟ ଉତ୍ସାହ, କର୍ମପ୍ରେରଣା ଏବଂ କିଛି ସକାରାତ୍ମକ କାର୍ଯ୍ୟ କରିବାର ଇଚ୍ଛାର ପ୍ରତିତ୍ୱ ଦେଉଛନ୍ତି ଡଃ ରଥ । ୧୯୯୩ ମସିହାରୁ କଟକଠାରେ ଖେଳମାଧ୍ୟମ ଶିଶୁ ଶିକ୍ଷାପାଇଁ ଏକ ବିଦ୍ୟାଳୟ ଆରମ୍ଭ କରି ତାର ମୁଖ୍ୟ ପୃଷ୍ଠପୋଷକ ଏବଂ ପରାମର୍ଶଦାତା ଭାବରେ କାର୍ଯ୍ୟ କରୁଛନ୍ତି । ଏହା କେବଳ ଗୋଟିଏ ବିଦ୍ୟାଳୟ ନୁହେଁ ଏହା ଏକ ତାଲିମ ଅନୁଷ୍ଠାନ ମଧ୍ୟ । ଫୁଲପରି କୋମଳ ଶିଶୁର ସର୍ବାଙ୍ଗୀନ ବିକାଶ, ସ୍ନେହ, ଆଦର, ଯତ୍ନ ମାଧ୍ୟମରେ ହିଁ ଡ଼ୁଏ-ଭୀତି ପ୍ରଦର୍ଶନ, ଦଣ୍ଡବିଧାନ ଏବଂ କଠୋରତା ଦ୍ୱାରା ନୁହେଁ- ଏହାରି ଉପରେ ଆଧାରିତ ହୋଇଚି ବିଦ୍ୟାଳୟ ଏବଂ ତାଲିମ ।

ଜଣେ ଲେଖକ ଭାବରେ ଡକ୍ଟର ରଥ ଓଡ଼ିଶାରେ କାହିଁକି ଓଡ଼ିଶା ବାହାରେ ମଧ୍ୟ ପରିଚିତ । ପାଟନାରେ ବି.ଏ., ଏମ୍.ଏ. ପଢ଼ିବା ଦିନଠାରୁ ତାଙ୍କର ଲେଖା ଆରମ୍ଭ ହୋଇଥିଲା । କିନ୍ତୁ ସେଗୁଡ଼ିକ ଥିଲା ଇଂରାଜୀରେ, ୧୯୪୮ ମସିହାରେ ତାଙ୍କର ପ୍ରଥମ ଓଡ଼ିଆ ଲେଖା 'ଲଣ୍ଡନ ଚିଠି' ଶୀର୍ଷକ ପ୍ରବନ୍ଧ ଗୋପବନ୍ଧୁ ଶ୍ରାଦ୍ଧ ବାର୍ଷିକ ସଂଖ୍ୟାରେ ପ୍ରକାଶ ପାଇଲା । 'ଆମର

ଭୁଲ କେଉଁଠି' ? ନାମରେ ବହୁ ଲେଖା ସମାଜରେ ପ୍ରକାଶିତ ହୋଇ ପରେ ବହି ଆକରେରେ ପ୍ରକାଶିତ ହୋଇଥିଲା । ନିରବଚ୍ଛିନ୍ନ ଭାବରେ ବିଭିନ୍ନ ସମସ୍ୟା ମୂଳକ ଲେଖାମାନ ଡଃ ରଥ ବିଭିନ୍ନ ପତ୍ରିକାରେ ଲେଖି ଆସୁଛନ୍ତି । ପ୍ରାୟ ସବୁଗୁଡ଼ିକ ସମାଲୋଚନା ମୂଳକ ଲେଖା । ଆଗରୁ ଭ୍ରମଣ ଅନୁଭୂତି ଉପରେ ଡକ୍ଟର ରଥଙ୍କର ବିଲାତ ଡାଏରୀ । ଆମେରିକା ଡାଏରୀ, ନବସଭ୍ୟତାର ଦେଶ ନାମରେ ବହି ପ୍ରକାଶିତ ହୋଇଥିଲା । ମନସ୍ତତ୍ତ୍ୱକୁ ସରଳ ଭାଷାରେ ବୁଝେଇବା ପାଇଁ ଲେଖିଛନ୍ତି 'ଆମେ ଆମ ପିଲା' 'ଆମେ ଆମମନ' 'ଆମେ ଆମ ମନନ' । ତାଙ୍କ ଆତ୍ମଜୀବନୀ ଗ୍ରନ୍ଥ 'ମୋ ସ୍ୱପ୍ନ ମୋ ଜୀବନ' ଖୁବ୍ ସୁଖପାଠ୍ୟ ଏବଂ ତଥ୍ୟପୂର୍ଣ୍ଣ । ତାହା ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଚି ।

ଖୁବ୍ ପରିଣତି ବୟସରେ ଡକ୍ଟର ରଥ ଆରମ୍ଭ କରିଛନ୍ତି ଉପନ୍ୟାସ ରଚନା । ଭଲପାଇ ବିଷୟରେ ଉପନ୍ୟାସ ଲେଖିବାରେ ତାଙ୍କର ଏକ ଅଦ୍ଭୂତ ଅନୁଭୂତି ହେଲା । ବିଶ୍ୱସାରା ଭ୍ରମଣକରି ସେ ବହୁ ବିଚିତ୍ର ଚରିତ୍ରଙ୍କୁ ଦେଖିଥିଲେ । ବହୁ ଘଟଣା ତାଙ୍କ ସ୍ମୃତିରେ ଜୀବନ୍ତ ଥିଲା । ସେଗୁଡିକୁ ନେଇ ସୁନ୍ଦର ଉପନ୍ୟାସ ରଚନା କରିବାର ବ୍ୟାକୁଳତା ସୃଷ୍ଟି ହେଲା ତାଙ୍କ ମନରେ । ୧୯୯୫ ମସିହାରେ ସେ ଉପନ୍ୟାସ ଲେଖା ଆରମ୍ଭ କଲେ ଏବଂ ୧୯୯୯ ମଧରେ ପାଞ୍ଚଟି ଉପନ୍ୟାସ ଲେଖିଲେ । ସେଗୁଡିକ ଭିତରେ 'ଭଲ ପାଇବାର ଆଦିକଥା', 'ଶେଷକଥା', 'ପାଇନପାଇବା ସ୍ୱପ୍ନ', 'ସାଗର ସେପାରେ' 'ଭବିଷ୍ୟଲୋକ ସଂପର୍କ' ଇତ୍ୟାଦି ପାଠକମନରେ ଚମକ ସୃଷ୍ଟି କରନ୍ତି । ଏବେବି ତାଙ୍କ ଲେଖନୀ ଚଳଚଞ୍ଚଳ । ମସ୍ତିଷ୍କ କ୍ରିୟାଶୀଳ ।

ଡକ୍ଟର ରାଧାନାଥଙ୍କ ବ୍ୟକ୍ତିତ୍ୱର ଆଉ ଏକ ଦିଗ ହେଉଛି ନିୟମିତ ଯୋଗାସନ ଏବଂ ପ୍ରାଣାୟାମ । ନାସ୍ତିକ ହୋଇଥିବାରୁ ପରମାତ୍ମାଙ୍କ ସହ ମିଶିଯିବା ଲକ୍ଷ୍ୟନେଇ ସେ ଯୋଗାଭ୍ୟାସ କରନ୍ତି ନାହିଁ । ଏହାର ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ପ୍ରତିଷ୍ଠିତ ନାନା ଆଧୁନିକ ଗବେଷଣାଗତ ମତାମତ ଉପରେ ସେ ଏହାକୁ ପର୍ଯ୍ୟବେସିତ କରିଛନ୍ତି । ଏ ବାବଦରେ ଡକ୍ଟର ରଥଙ୍କ ସିଦ୍ଧାନ୍ତ ହେଲା ପ୍ରତିଦିନ କେତେ ସମୟଧରି ଯୋଗାସନ ପ୍ରାଣାୟାମ ଓ ଧ୍ୟାନ ଧାରଣା ମାଧମରେ ମନରେ କେତେଗୁଡ଼ିଏ ସ୍ୱାସ୍ଥଗତ ଓ ମାନସିକ ଚିନ୍ତା ଜାଗ୍ରତ କରାଇ ପା ରିଲେ ତାହା କ୍ରମେ ଫଳବତୀ ହେବାର ସମ୍ଭାବନା

ବେଶୀ । ମନସ୍ତତ୍ତ୍ୱବିତ୍‌ଙ୍କ ମତରେ "Bio feed back ଏବଂ Auto suggection" ମାଧ୍ୟମରେ ତୁମେ ତୁମର ବହୁ ଚିନ୍ତାଧାରାକୁ ଶରୀର ଓ ମନ ଭିତରେ ବାରମ୍ବାର ଉଚ୍ଚାରିତ କରି ତାକୁ ଫଳବତୀ କରିପାରିବ । ଜଣେ ଯଦି ପ୍ରତିଦିନ କିଛି ସମୟ ତୁମର ଦେହ ଭଲ, ସ୍ୱାସ୍ଥ୍ୟ ଭଲ ବୋଲି ସ୍ୱିକାର କରିବା ସହିତ ଅସୂୟା, କ୍ରୋଧ, ଭୟ ପ୍ରଭୃତି ନକାରତ୍ମକ ଭାବନାକୁ ମନରୁ ବାହାର କରିଦେବା କଥା ବାରମ୍ବାର ଉଚ୍ଚାରିତ କରି ଚାଲିବ ତାହେଲେ ଏପ୍ରକାର ଚିନ୍ତାଧାରା ଦେହ ଓ ମନ ଭିତରେ ସଂଚରିଯିବ । ଏ ପ୍ରକ୍ରିୟା ଏପରି କ୍ରମାଗତ ଭାବରେ ଶକ୍ତିଶାଳୀ ହେଇ ଚାଲିଲେ ସ୍ୱାସ୍ଥ୍ୟରେ ଆଶାତୀତ ଉନ୍ନତି ଦେଖାଦେବ । ଏ ସଂପର୍କରେ ବହୁ ଗବେଷଣା ଭାରତରେ ତଥା ପାଶ୍ଚାତ୍ୟ ଦେଶମାନଙ୍କରେ ଚାଲିଚି ଏବଂ ସେଥିପାଇଁ ଯୋଗାସନ ପୃଥିବୀର ଲୋକପ୍ରିୟ ହେଇ ଉଠୁଚି । ଏହାକୁ ବିଶ୍ୱାସ କରି ଡଃ ରଥ ପ୍ରାୟ ୫୦ ବର୍ଷ ହେବ ନିୟମିତ ଭାବରେ ପ୍ରତିଦିନ ଘଣ୍ଟାଏ ଲେଖାଏଁ ଯୋଗାସନ କରୁଛନ୍ତି ।

ବହୁବର୍ଷ ଧରି ନିୟମିତ ଭାବରେ ଯୋଗାସନ କରିବା ଏବଂ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ସୁଷମ ଖାଦ୍ୟ ଉପରେ ବରାବର ନଜର ରଖିବା ହେତୁ ଡଃ ରଥଙ୍କ ସ୍ୱାସ୍ଥ୍ୟ ଅତ୍ୟନ୍ତ ଭଲ । ସେ ନିରୋଗ ଏବଂ ସ୍ୱାସ୍ଥ୍ୟବାନ । ଶହେବର୍ଷ ଯାଏଁ ବଞ୍ଚିବାର ଅଭିପ୍ରାୟ ତାଙ୍କର ଅଛି । ତା ସହ ଯେକୌଣସି ସମୟରେ ଚାଲିଯିବା ପାଇଁ ମାନସିକ ପ୍ରସ୍ତୁତି ମଧ୍ୟ ଅଛି । ଯେହେତୁ ସେ ନାସ୍ତିକ ସ୍ୱର୍ଗନରକ ପରି କାଳ୍ପନିକ ମାନସିକ ବିଭ୍ରାନ୍ତି ତାଙ୍କର ନାହିଁ । ଅନ୍ୟାନ୍ୟ ଦେହଧାରୀ ଜନ୍ତୁଙ୍କ ପରି ସେ ପଞ୍ଚଭୂତରେ ହିଁ ଲୀନ ହୋଇଯିବେ । ପୁନର୍ଜନ୍ମରେ ବିଶ୍ୱାସ ନାହିଁ ତାଙ୍କର । ଜଣକର ସମସ୍ତ ମାନସିକତା ଆଶା ଆକାଂକ୍ଷା ଆଦର୍ଶ ସ୍ୱପ୍ନ କେବଳ ସାମୟିକ ସମଷ୍ଟିଗତ ଜୈବିକ ପ୍ରକ୍ରିୟା । ଦେହର ଅବସାନପରେ ଏହି ପ୍ରକ୍ରିୟା ମଧ୍ୟ ଲିଭିଯିବା ସ୍ୱାଭାବିକ ବୋଲି ତାଙ୍କର ଦୃଢ଼ ଧାରଣା । ଏ ସଂପର୍କରେ ଗୋଟିଏ ପ୍ରଶ୍ନ ଉଠିପାରେ ଯେ ଯଦି ସ୍ୱର୍ଗ ନର୍କ ନାହିଁ, ପୁନର୍ଜନ୍ମ ନାହିଁ, ଈଶ୍ୱରଙ୍କ ନିକଟରେ ସେ ଦାୟୀ ନୁହେଁ- ତା ହେଲେ ମଣିଷ ପାଇଁ ପାପ ପୂଣ୍ୟ ସମାନ, ତା ହେଲେ ସେ ସହଜିଆ ପାପ କର୍ମ ନକରି ସବୁବେଳେ କଷ୍ଟିଆ ଭଲ କାମ କାହିଁକି କରିବ ? ଏହାର ଏକ ସରଳ ଉତ୍ତର ଡଃ ରଥ ନିର୍ଣ୍ଣୟ କରିଛନ୍ତି । ତାହା ହେଲେ ପାପକଲେ ତାର ମାନସିକ ପ୍ରକ୍ରିୟାରେ ଯେତେ ପ୍ରକାରର ବିବେକଗତ ଏବଂ

ତାର ସାମାଜିକ ସଂପର୍କରେ ଅହରହ ତିକ୍ତତା ଲାଗି ରହିବ ସେଥିରୁ ନିଜକୁ ମୁକ୍ତ ରଖିଲେ ଜଣେ ଜୀବନରେ ସୁଖଶାନ୍ତି ପାଇବ । ଜୀବନ ଯାକ ନାନା ପ୍ରକାର ଦୁଃଖ, ଅନୁତାପ ଏବଂ ଗ୍ଲାନି ଜନିତ ଦୁଶ୍ଚିନ୍ତା ଏବଂ ଅଶାନ୍ତି ଅପେକ୍ଷା ମାନସିକ ଶାନ୍ତି, ଅନ୍ୟମାନଙ୍କ ଦ୍ୱାରା ପ୍ରଶଂସିତ ଜୀବନ କ'ଣ ଶ୍ରେୟନୁହେଁ । ତାହାହିଁ ଜୀବନକାଳ ଭିତରେ ସ୍ୱର୍ଗପ୍ରାପ୍ତିର ଆନନ୍ଦ ।

୧୯୨୦ ମସିହା ମାର୍ଚ୍ଚ ୮ରେ ଗଂଜାମର କୋଦଳା ନିକଟବର୍ତ୍ତୀ ଏକ ଅଖ୍ୟାତପଲ୍ଲୀ ତଳମପଲ୍ଲୀରେ ଜନ୍ମ ଗ୍ରହଣ କରିଥିବା ପିଲାଦିନରୁ ଚକର ଛେଉଣ୍ଡ ରାଧାନାଥ ଆଜି ତେୟାଅଶୀ ବର୍ଷ ବୟସ୍କ ପ୍ରଫେସର ଡକ୍ଟର ରାଧାନାଥ ରଥ । ଆନ୍ତର୍ଜାତିକ ମାନ୍ୟତାପ୍ରାପ୍ତ ଜଣେ ମନୋ ବୈଜ୍ଞାନିକ । ଜଣେ ବିଶିଷ୍ଟ ସଂଗଠକ, ସମାଲୋଚକ, ସାହିତ୍ୟିକ ଏବଂ ସମାଜ ସେବୀ, ସର୍ବୋପରି ବାର୍ଦ୍ଧକ୍ୟ ଗ୍ରସ୍ତ ମାନସିକତାଠାରୁ ବହୁ ଦୂରରେ ସଦାଚଞ୍ଚଳ, କର୍ମପ୍ରେରଣାରେ ତେଜୀୟାନ, ସ୍ନେହ ଏବଂ ଶ୍ରଦ୍ଧାଶୀଳ, ବନ୍ଧୁବତ୍ସଳ, ସ୍ୱପ୍ନବିଭୋର, ଜୀବନକୁ ଗଭୀର ଭାବରେ ଭଲ ପାଉଥିବା ଡଃ ରାଧାନାଥ ରଥ ଆଜି କିନ୍ତୁ ନିଜକୁ ସଂପୂର୍ଣ୍ଣ ରୂପେ ପ୍ରସ୍ତୁତ କରିଛନ୍ତି ମୃତ୍ୟୁକୁ ସ୍ୱାଗତ କରିବା ପାଇଁ । ତେବେ ତାଙ୍କ ସିଦ୍ଧାନ୍ତ ଅନୁସାରେ ମୃତ୍ୟୁ ଏକ ଦାବଦହନ ନୁହେଁ ଏକ ଶୀତଳନୀରବତା । ଏବେ କି ଯଦି ବେଳ ଅଛି ଯାଆନ୍ତୁ ଅପରାହ୍ନରେ ତାଙ୍କ ସାଆନ୍ତ ସାହି ବାସଭବନକୁ । ଦେଖିବେ ବାସଭବନର ଉପର ମହଲାରେ ତାଙ୍କ ବଗିଚାର ଗଛପତ୍ର ଉହାଡ଼କୁ, ସାନ୍ଧ୍ୟଆକାଶରେ ଉଠୁଥିବା ସଂଧ୍ୟା ତାର ଆଡ଼କୁ ସ୍ୱପ୍ନ ବିଭୋର ଦୃଷ୍ଟିରେ ଚାହିଁଥିବା ଏବଂ ଜୀବନର ଶେଷ ଲଗ୍ନ ପର୍ଯ୍ୟନ୍ତ ଜୀବନକୁ ଭଲ ପାଉଥିବା ଦରଦୀ ରାଧାନାଥ ରଥଙ୍କୁ ।

